# ଆଚାର୍ଯ୍ୟ ହରିହର

ପ୍ରାଧାପକ ଶ୍ରୀ ବିରଞ୍ଚି ନାରାୟଣ ଦାଶ



ଆଚାର୍ଯ୍ୟ ହରିହର——ଲେଖକ : ପ୍ରାଧ୍ୟାପକ ଶ୍ରୀ ବିରଞ୍ଚି ନାରାୟଣ ଦାଶ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୨, ପ୍ରଚ୍ଛଦପଟ : ବିଜୟ କୁମାର ପ୍ରଧାନ, ଡି.ଟି.ପି. : କମ୍ପ୍ୟୁପ୍ରିଣ୍ଟ, ଭାଷାକୋଷ ଲେନ୍, କଟକ, ମୁଦ୍ରଣ:

ମୁଦ୍ରଣ : ରୟାଲ ହାଫ୍‌ଟୋନ୍ କୋ, କଟକ - ୨



**ACHARYA HARIHAR**—Author: Biranchi Narayan Dash, Publisher : Sahadev Pradhan, Friends' Publishers, Binodbehari, Cuttack. 2, Orissa (India), Cover Design: B. K. Pradhan, D.T.P. by: Compu Print, Cuttack, Printer: Indrani
**Printed at : *ROYAL HALF-TONE Co.,* Cuttack-2**

First Edition : 1999

Price : **Rs.20**



ଜ୍ଞାନର ପୂଜାରୀ ହରିହର ୧୯୬୯



''ସେ ଆଉ ନାହାନ୍ତି''-ଅନ୍ତିମ ଶଯ୍ୟା ନିକଟରେ-



୧୯୭୧, ଫେବୃଆରୀ-୨୧, ରବିବାର "ଅନ୍ତିମ ଶୟନ"

# ପାରିବାରିକ ଜୀବନ ଓ ବଂଶ ପରିଚୟ

ପୃଥିବୀ ପୃଷ୍ଠରେ ମଞ୍ଜିଟିଏ ପଡ଼ିଲେ ପୃଥିବୀ ତାକୁ ଆଦର କରିନିଏ । ସେ ପୁଣି ପାଣି,ପବନ ଓ ଆଲୋକରେ ଗଜୁରି ଉଠି ମୁହଁ ଟେକେ ପୃଥିବୀକୁ ଦେଖିବା ପାଇଁ । କ୍ରମେ ଦି' ଦି' ପତର କାଢ଼ି ସେ ବଡ଼ ହୁଏ ପୃଥିବୀର ମାତୃତ୍ୱକୁ ବୁଝିବା ଯାଏଁ । ସେଥିପାଇଁ ସେ ତା'ର ଶକ୍ତି ଅନୁସାରେ ତା' ମାଆକୁ ଶାନ୍ତି ଦେବା ପାଇଁ ଛାଇ ପ୍ରଦାନ କରିଥାଏ । ମାତ୍ର ସେ ଛାଇରେ ପୃଥିବୀ ଯେ ଏକା ଶାନ୍ତି ପାଏ ତାହା ଠିକ୍ ନୁହେଁ, ସେହି ଛାଇର ଶୀତଳତାରେ ପଶୁ, ପକ୍ଷୀ, ମାନବସମାଜ ସମସ୍ତେ ଅଂଶୀଦାର ହୁଅନ୍ତି । ପରିଶେଷରେ ତୃଣଭୋଜୀ ପଶୁଗଣଙ୍କର ଆହାର ପାଲଟେ ତାର ଚାରା, ପଶୁପକ୍ଷୀଙ୍କର ମଳମୂତ୍ରରେ ତାର ହୁଏ ଅଭିଷେକ । ମଣିଷ ତାର ଡାଳକୁ କାଟି ଫିଙ୍ଗିଦିଏ । ବେଳେବେଳେ ତା'ର ବଂଶ ଲୋପ କରିଦିଏ । ତଥାପି ବି ସେ ଶୋଚନା କରେ ନାହିଁ । ସେ ପୁଣି ତା'ର ପାରିବାରିକ ଜୀବନ ଆରମ୍ଭ କରିଦିଏ । ''ପରୋପକାରାୟ ସ୍ୱର୍ଗାୟ'' ତା ଜୀବନର ମନ୍ତ୍ର ହୋଇଯାଏ । ଏହି ମନ୍ତ୍ରର ସ୍ପର୍ଶ ସମସ୍ତଙ୍କ ମନରେ ଚମକ ସୃଷ୍ଟି କରେନା କି ହୃଦୟରେ ହିନ୍ଦୋଳ ଖେଳାଏନା । ଯେଉଁମାନଙ୍କ ହୃଦୟକୁ, ପ୍ରାଣକୁ ଏହି ମନ୍ତ୍ରର ସ୍ପର୍ଶ ଛୁଇଁଯାଏ ସେମାନେ ହୁଅନ୍ତି ମହାନ୍, କାଳଜୟୀ ଓ ଚିରସ୍ମର । ସେହିମାନଙ୍କ କରଣୀରେ ପୃଥିବୀ ହୁଏ ସର୍ବାଙ୍ଗସୁନ୍ଦରୀ । ତାଙ୍କରି ଦୀପ୍ତିମୟତାରେ ପୃଥିବୀବାସୀ ଆଲୋକିତ ହୁଅନ୍ତି, ପୁଲକିତ ହୁଅନ୍ତି । ବିଚ୍ଛେଦରେ ଚୁ'ଚୁ କରନ୍ତି, ହାୟ ହାୟ କରନ୍ତି ।

ପୃଥିବୀ ଏକ ରଙ୍ଗମଞ୍ଚ । ଏହି ଚିରସ୍ଥାୟୀ ରଙ୍ଗମଞ୍ଚରେ ପ୍ରତ୍ୟେକ ଜୀବ ଜଣେ ଜଣେ କଳାକାର । ଯିଏ ଯେଉଁ ଭୂମିକାରେ ଅଭିନୟ କରୁନା କାହିଁକି ପ୍ରତ୍ୟେକ ଅଭିନୟର ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ରହିଅଛି । କଳାକାରର ନିଖୁଣ ଅଭିନୟରେ ସେହି ଆଭିମୁଖ୍ୟ ପ୍ରାଞ୍ଜଳ ଓ ସ୍ପଷ୍ଟ ହୁଏ । ରଙ୍ଗମଞ୍ଚକୁ ଆସୁଥିବା ସମସ୍ତ କଳାକାରଙ୍କ ମଧ୍ୟରୁ

କେତେକଙ୍କର ଅଭିନୟ ସବୁଦିନ ପାଇଁ ଅପାସୋରା ରହିଯାଏ । ନାଟକୀୟ ଜୀବନରେ ସିନା ଜୀବନ ଓ ନାଟକ ମଧ୍ୟରେ ଫରକ ଥାଏ; ଅଭିନୟ ସାରି ରଙ୍ଗମଞ୍ଚରେ ଗୁଳିବିଦ୍ଧ କଳାକାର ବାହାରେ ଜନସାଧାରଣଙ୍କ ମେଳରେ ବସି ବାକୀ ଅଂଶକୁ ଉପଭୋଗ କରିଥାଏ, ହେଲେ ଏହି ବାସ୍ତବ ରଙ୍ଗମଞ୍ଚର କଳାକାର ପ୍ରତ୍ୟେକ ମାର୍ମିକ ସତ୍ୟକୁ ମର୍ମେ ମର୍ମେ ଭୋଗ କରିଥାଏ । ଏଠାରେ ଜୀବନଟା ନାଟକ ହୁଏ, ନାଟକ ଜୀବନ ନୁହେଁ । ନିଖୁଣ ନାଟକୀୟତା ବା କଳାକୁ ନେଇ ନୁହେଁ, କଠୋର ସତ୍ୟକୁ ଆଧାର କରି ଅଭିନୀତ ହୋଇଚାଲେ ନାଟକ ପରେ ନାଟକ । ବିଭିନ୍ନ ନାୟକ, ପାର୍ଶ୍ୱନାୟକ ଓ ଖଳନାୟକଙ୍କ ପାରସ୍ପରିକ ଅନ୍ତଃକ୍ରିୟାରେ ନାଟକ ହୁଏ ରସାଣିତ । ନାୟକର ଆଭିମୁଖ୍ୟ ସର୍ଜନାତ୍ମକ ହୋଇଥିଲାବେଳେ ଖଳନାୟକ ଧ୍ୱଂସର ତାଣ୍ଡବଲୀଳା ପାଇଁ ପ୍ରସ୍ତୁତ ହେଉଥାଏ । 'କୁସୁମ ପରଶେ ପଟ ନିସ୍ତରେ' ନ୍ୟାୟରେ ଏହିଭଳି ନାୟକମାନଙ୍କର ସୁକର୍ମ ଫଳକୁ ଭୋଗ କରୁ କରୁ ଖଳନାୟକଗଣ ନିସ୍ତାର ପାଇଯାଆନ୍ତି । ଏହିଭଳି ଜଣେ ନାୟକ ଥିଲେ ଆଚାର୍ଯ୍ୟ ହରିହର ।

ଆଚାର୍ଯ୍ୟ ହରିହର ଥିଲେ ସତ୍ୟବାଦୀ ଗୋଷ୍ଠୀର ଜନୈକ ସଖା । ଜନପ୍ରିୟ ନେତା ଭାବରେ ଗୋପବନ୍ଧୁ, ଦରଦୀ କବି ଭାବରେ ଗୋଦାବରୀଶ, ଜ୍ଞାନୀ ସାହିତ୍ୟିକ ଭାବରେ ନୀଳକଣ୍ଠ, ଅନୁସନ୍ଧିତ୍ସୁ ଦାର୍ଶନିକ ଭାବରେ କୃପାସିନ୍ଧୁ ପରିଚିତ ଥିଲାବେଳେ ଶ୍ରେଷ୍ଠ ଜନହିତୈଷୀ ଭାବରେ ହରିହର ନିଜର ସ୍ୱତନ୍ତ୍ରତା ବଜାୟ ରଖିଥିଲେ । ମହାଭାରତ ଯୁଗର ପଞ୍ଚୁପାଣ୍ଡବଙ୍କର ସତ୍ୟବାଦୀ ଯୁଗରେ ପୁନର୍ଜନ୍ମ ଘଟିଥିଲା ଯେପରି । ସମକାଳୀନ କୌରବମାନଙ୍କର ଅନ୍ୟାୟ ଅନୀତିର ମୂଳୋତ୍ପାଟନ କରିବା ଥିଲା ଏମାନଙ୍କର ଅନ୍ତିମ ଲକ୍ଷ୍ୟ । ଏମାନେ କେହି ଅଯୋଗ୍ୟ ବା ଅନୁପଯୁକ୍ତ ନଥିଲେ ରାଜସୁଖ, ପ୍ରାଚୁର୍ଯ୍ୟ ବା ଭୋଗବିଳାସ ଲାଭ କରିବା ପାଇଁ, ମାତ୍ର ଏମାନଙ୍କର ଲକ୍ଷ୍ୟ ଥିଲା ଭିନ୍ନ । ଏଣୁ ଏମାନେ ସ୍ୱେଚ୍ଛାରେ ବନବାସ ଆଦରି ନେଲେ ସମସ୍ତ ମୋହ ଓ ମମତାକୁ ପଛରେ ପକାଇ ଦେଇ । ଏବେବି ବକୁଳବନ ଅଛି । ପୁତ୍ରସମ ଛାତ୍ରମାନଙ୍କ ନିକଟରେ ଏମାନେ କିପରି ପୈତୃକ ବନ୍ଧନରେ ବାନ୍ଧି ହୋଇଯାଇଥିଲେ ତାହାର ନୀରବ ସାକ୍ଷ୍ୟ ଦେବାପାଇଁ, ସ୍ମୃତି ପେଟିକା ଖୋଲିଦେବା ପାଇଁ ବକୁଳ ବନର ଶୀତଳ ସମୀରଣ

ଲହରୀ, ଧୂଳିମାଟି ବୃକ୍ଷଲତା ଆଘ୍ରାସରତ ଅଛନ୍ତି । ବକୁଳବନରେ ବକୁଳ ପତ୍ରମାନଙ୍କର 'ସର୍‌ସର୍' ଶବ୍ଦ କିଛି ଅବୋଧ ଭାଷାରେ ସେହି ଅପାସୋରା ଇତିହାସ ଆବୃତ୍ତି କଲାପରି ମନେ ହେଉଛି । କୁସଂସ୍କାର, ଅନ୍ଧବିଶ୍ୱାସର 'ରାବଣରାଜ'ରେ ଯେଉଁଠି ସାଧାରଣ ଜନମାନସ ଅତିଷ୍ଠ ହୋଇପଡ଼ିଛି ସେଇଠି ରାମରାଜ୍ୟର ଭିତ୍ତିପ୍ରସ୍ତର ପକାଇବା ପାଇଁ ଅଣ୍ଟା ଭିଡ଼ିଛନ୍ତି ସତ୍ୟବାଦୀ ଗୋଷ୍ଠୀର ପଞ୍ଚସଖା ବୃନ୍ଦ । ଦୈବୀଦୁର୍ବିପାକର କରାଳ ରାହୁଗ୍ରାସ କଲାବେଳେ, ଦୈନ୍ୟ, ଜରା, ଯନ୍ତ୍ରଣାରେ ମାନବ ସମାଜ ତ୍ରାହି ତ୍ରାହି ଚିତ୍କାର କଲାବେଳେ ପଞ୍ଚସଖା ଗୋଷ୍ଠୀ ନୀରବରେ ବସିପାରିନାହାନ୍ତି । ଏହି ସାରା ବିଶ୍ୱ ଯେ ତାଙ୍କର ପରିବାର !

ପ୍ରତ୍ୟେକ ବ୍ୟକ୍ତିର ଜୀବନ କାହାଣୀ ଏକ ସ୍ୱତନ୍ତ୍ର ଇତିହାସ । ମାତ୍ର ବିଶ୍ୱଜନୀନତାକୁ ଏହି ଐକିକ ଇତିହାସ କେତେଦୂର ପ୍ରଭାବିତ କରିପାରେ ? ଯଦି ଐକିକ ଇତିହାସ ଦ୍ୱାରା ମାନବସମାଜର ଇତିହାସ ପ୍ରଭାବିତ ହୁଏ ଓ ଧାରାବାହିକତା ବଜାୟ ରଖେ ତେବେ ସେହି ଐକିକ ଇତିହାସର ନାୟକ ହୁଏ ପ୍ରମୁଖ ଐତିହାସିକ ନାୟକ । ତାଙ୍କୁ କେନ୍ଦ୍ରକରି ତାଙ୍କର ପରିବେଶ, ଗ୍ରାମ, ତତ୍‌କାଳୀନ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଚିତ୍ର ସବୁକିଛି ଐତିହାସିକ ଅମରତ୍ୱ ଲାଭ କରନ୍ତି । ସାକ୍ଷୀଗୋପାଳର ଅନତିଦୂରରେ ପ୍ରତିଷ୍ଠିତ ବ୍ରାହ୍ମଣଶାସନ ଶ୍ରୀରାମଚନ୍ଦ୍ରପୁର ଏହିପରି ଅନେକ ଇତିହାସ ସ୍ରଷ୍ଟାଙ୍କର ଜନନୀ । ଆକବରଙ୍କର ବାଦଶାହୀରେ ତତ୍‌କାଳୀନ ଓଡ଼ିଶାର ରାଜା ଥିଲେ ଶ୍ରୀ ରାମଚନ୍ଦ୍ର ଦେବ । ଭୋଇବଂଶର ବୀର. ବେହେରାଙ୍କର ଦାୟାଦ ଶ୍ରୀରାମଚନ୍ଦ୍ର ଦେବ ଶ୍ରୀରାମଚନ୍ଦ୍ରପୁର, ବୀର ରାମଚନ୍ଦ୍ରପୁର ଓ ଉଭୟମୁଖୀ ରାମଚନ୍ଦ୍ରପୁର ବ୍ରାହ୍ମଣଶାସନ ପ୍ରତିଷ୍ଠା କରିଯାଇଛନ୍ତି । ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ପ୍ରତିଷ୍ଠିତ ବିଶାଳ ବ୍ରାହ୍ମଣଶାସନ ଶ୍ରୀରାମଚନ୍ଦ୍ରପୁର ଯୁଗାନୁକ୍ରମେ ଅନେକ ସତ୍‌ପୁରୁଷ, ସାଧୁ, ବାଗ୍ମୀ, ସମାଜସଂସ୍କାରଙ୍କୁ ସୃଷ୍ଟି କରି ଗର୍ବିତା ହୋଇଛି । ଯୁଗପୁରୁଷ ଆଚାର୍ଯ୍ୟ ହରିହରଙ୍କର ଜନ୍ମ ଦେବାଳୟ ଓ ପୁଷ୍କରିଣୀ ପରିଶୋଭିତ ଶ୍ରୀରାମଚନ୍ଦ୍ରପୁର ଗ୍ରାମରେ ଲବ୍ଧପ୍ରତିଷ୍ଠ ବ୍ରାହ୍ମଣ ପରିବାରରେ । ପିତା ମହାଦେବ ବ୍ରହ୍ମା ଥିଲେ ସମ୍ଭ୍ରାନ୍ତ କୁଳୀନ ବ୍ରାହ୍ମଣ । ମାତା ଶ୍ରଦ୍ଧାଦେବୀ ଥିଲେ ପତିବ୍ରତା ଓ ଧର୍ମପରାୟଣା ମହିଳା । ହରିହରଙ୍କର ମାନସପଟରେ ତାଙ୍କ ମା'ଙ୍କର ମମତାମୟୀ ପ୍ରତିମୂର୍ତ୍ତି ପୂର୍ଣ୍ଣାଙ୍ଗତା ଲାଭ

କରିବା ପୂର୍ବରୁ, ମା'ର ବାତ୍ସଲ୍ୟ ପ୍ରେମକୁ ଉତ୍ତମରୂପେ ହୃଦୟଙ୍ଗମ କରିବା ପୂର୍ବରୁ ଶ୍ରଦ୍ଧାଦେବୀ କାଳର କଳାପରଦା ଅନ୍ତରାଳରେ ଅନିଚ୍ଛାକୃତ ଭାବେ ଛପି ଯାଇଥିଲେ । ଜନ୍ମ ଦେଇଥିବା ଅମୃତ ଶିଶୁର ଭାଗ୍ୟ ଓ ଭବିଷ୍ୟତରେ ସେ ଗର୍ବିତା ହେବାପାଇଁ ସୁଯୋଗ ପାଇ ପାରିଲେ ନାହିଁ ।

ମହାଦେବ ବ୍ରହ୍ମା ପ୍ରିୟା ପତ୍ନୀଙ୍କର ଅକାଳ ବିୟୋଗରେ ସଂପୂର୍ଣ୍ଣ ଭାଙ୍ଗି ପଡ଼ିଲେ । ମାତୃହରା ହରିହରଙ୍କର ଲାଳନପାଳନ ବିଷୟରେ ଚିନ୍ତା କରି ସେ ଆହୁରି ଅତିଷ୍ଠ ହୋଇପଡ଼ି ଶଯ୍ୟାଶାୟୀ ହେଲେ । ମହାଦେବ ବ୍ରହ୍ମାଙ୍କର ବୟସ ବେଶୀ ହୋଇନଥିଲା । ତାଙ୍କର କୁଟୁମ୍ବ, ବଂଧୁ, ପରିଜନଗଣ ଦ୍ୱିତୀୟ ବିବାହ ପାଇଁ ପ୍ରସ୍ତାବ ଦେଲେ । ସାବତମା' ଦ୍ୱାରା ଲାଞ୍ଛିତ ହୋଇ ଏକମାତ୍ର କୁଳପ୍ରଦୀପ, ପ୍ରଣୟର ଅବଶିଷ୍ଟ ସନ୍ତକ ହରିହର କାଳେ ନିଃସଙ୍ଗତା ଅନୁଭବ କରିବ ଏହି ଭୟରେ ଦ୍ୱିତୀୟ ବିବାହ ପାଇଁ ମହାଦେବ ବ୍ରହ୍ମା ଘୋର ଅନିଚ୍ଛା ପ୍ରକାଶ କଲେ । ମାତ୍ର ପ୍ରିୟ ହରିହରର ମାତୃହରା ଦୁରବସ୍ଥା ଦେଖି ପରେ ତୁଙ୍ଗେଇ ଦେବୀଙ୍କୁ ବିବାହ କରିଥିଲେ । ପରେ ହରିହରଙ୍କର ତିନିଭାଇ ରାମ, ଗୋବିନ୍ଦ ଓ ଶଙ୍କର ଏବଂ ଏକ ଭଉଣୀ ନିଶା ତାଙ୍କର ପରିବାରକୁ କୋଳାହଳମୟ କରିଥିଲେ । ସାବତମା'ଙ୍କର ନିଷ୍କାପଟ ବାତ୍ସଲ୍ୟପ୍ରେମର ଆବର୍ତ୍ତରେ ହରିହର ନିଜ ମା'ଙ୍କୁ ପାସୋରି ଦେଇଥିଲେ । ବାଲ୍ୟକାଳରୁ ତାଙ୍କର ଚିନ୍ତାଶୀଳତା, ସରଳତା, ପରଦୁଃଖକାତରତା ଆଦି ମହନୀୟ ଗୁଣରାଜି ପ୍ରକଟିତ ହୋଇଥିଲା । ସେ ଥିଲେ ଅମାୟିକ ସ୍ୱଭାବଯୁକ୍ତ ଚରିତ୍ରବାନ୍ କିଶୋର । ଗ୍ରାମ ବିଦ୍ୟାଳୟରେ ପ୍ରାଥମିକ ଶିକ୍ଷା ଶେଷ କରି ହରିହର ପୁରୀ ଜିଲ୍ଲାସ୍କୁଲରେ ନାମ ଲେଖାଇଲେ । ସେହି ବିଦ୍ୟାଳୟରେ ସେ ଗୋପବନ୍ଧୁଙ୍କ ସଂସ୍ପର୍ଶରେ ଆସିଥିଲେ । ବୟସରେ ଗୋପବନ୍ଧୁ ହରିହରଙ୍କଠାରୁ ମାତ୍ର ୧୧ ମାସ ବଡ଼ ଥିଲେ । ଉତ୍ତମ ଛାତ୍ର ଭାବରେ ଶିକ୍ଷକ ଓ ସହପାଠୀ ମହଲରେ ଦୁହେଁ ଆଦରଣୀୟ ଥିଲେ । ଉଭୟଙ୍କର ଘନିଷ୍ଠତା କ୍ରମଶଃ ବିକଶିତ ହେଉଥିଲା । ବିଦ୍ୟାଳୟରେ ଅଧ୍ୟୟନ କାଳରୁ ସେମାନେ ବିଭିନ୍ନ ପ୍ରକାରର ସେବା କାର୍ଯ୍ୟରେ ଯୋଗଦାନ କରି ଆସୁଥିଲେ ।

ସେତେବେଳେ ବ୍ରାହ୍ମଣସମାଜରେ ପ୍ରଚଳିତ ପ୍ରଥାନୁସାରେ ବ୍ରତୋପନୟନ ୭ ରୁ ୯ ବର୍ଷ ମଧ୍ୟରେ କରିବାକୁ ପଡୁଥିଲା । ସେଥିରୁ ଊର୍ଦ୍ଧ୍ୱ ହେଲେ ସମାଜରେ ତାହା ଏକ ଧର୍ତ୍ତବ୍ୟ ଅପରାଧ ରୂପେ ପରିଗଣିତ ହେଉଥିଲା । ତେଣୁ ଉର୍ଣ୍ଣାକୁଳାର

ବିଦ୍ୟାଳୟରେ ଅଧ୍ୟୟନରତ ଥିବା ସମୟରେ ହରିହରଙ୍କର ବ୍ରତୋପନୟନ ସମାହିତ ହେଲା । ବ୍ରତୋପନୟନ ପରେ ପରେ ବ୍ରହ୍ମଚାରୀ ହରିହର ଖୁବ୍ ଶୀଘ୍ର ଗାର୍ହସ୍ଥ୍ୟ ଆଶ୍ରମ ପାଇଁ ଅନିଚ୍ଛାକୃତ ଭାବରେ ପ୍ରସ୍ତୁତ ହେଉଥିଲେ । ସେତେବେଳର ବାଲ୍ୟବିବାହ ପ୍ରଥା ଅନୁସାରେ କନ୍ୟା ୭ ରୁ ୯ ବର୍ଷ ବୟସ ଓ ବର ୧୨ ରୁ ୧୫ ବର୍ଷ ବୟସ ସୀମା ମଧ୍ୟରେ ବିବାହ କରିବା ଥିଲା ସାମାଜିକ ନିୟମ । ଏଥିରୁ ବିଚ୍ୟୁତ ବ୍ୟକ୍ତି ଜଣେ ଅପରାଧୀ ଭାବରେ ବିବେଚିତ ହେଉଥିଲା । ଧର୍ମନିଷ୍ଠ ମହାଦେବ ବ୍ରହ୍ମା ଏଥିରୁ ବାଦ୍ ପଡ଼ନ୍ତେ କିପରି ? ବ୍ରହ୍ମାଙ୍କର ଘନିଷ୍ଠ ବଂଧୁ ରାମଚନ୍ଦ୍ର ମିଶ୍ରଙ୍କର କନ୍ୟା ସହ ହରିହରଙ୍କର ବିବାହ ସଂପନ୍ନ ହୋଇଗଲା । ସଂସାରର ସାର ଆହରଣ କରିବାର ପ୍ରଥମ ଅଙ୍କରେ ମାତ୍ର ଦୁଇବର୍ଷ ପରେ ହରିହର ପତ୍ନୀଙ୍କୁ ହରାଇଲେ । ସେତେବେଳେ ଅଳ୍ପବୟସ୍କ ପିଲାମାନେ ବିବାହକୁ 'ବୋହୂବୋହୂକା' ଖେଳ ବୋଲି ଭାବୁଥିଲେ । ସଂସାରର ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିବା ପାଇଁ ପରିପକ୍ୱତା ଓ ମାନସିକ ଦକ୍ଷତା ନଥାଇ ବାଳକ ବାଳିକାମାନଙ୍କୁ ବୈବାହିକ ବଂଧନରେ ଆବଦ୍ଧ କରି ଦିଆଯାଉଥିଲା । କିନ୍ତୁ ପତ୍ନୀବିୟୋଗ ହରିହରଙ୍କର ଅପରିପକ୍ୱ ମନସ୍ତତ୍ତ୍ୱରେ ଗଭୀର ରେଖାପାତ କରିଥିଲା । ରାମଚନ୍ଦ୍ର ମିଶ୍ରଙ୍କର ଦ୍ୱିତୀୟ କନ୍ୟା ସହ ତାଙ୍କର ପୁନଃବିବାହ ସଂପନ୍ନ ହୋଇଥିଲା । ମାତ୍ର ସାଂସାରିକ ସୁଖ ହରିହରଙ୍କର ଭାଗ୍ୟରେ ନଥିଲା । ଦ୍ୱିତୀୟ ପତ୍ନୀ ବି ଅକାଳରେ ମୃତ୍ୟୁବରଣ କଲେ । ଦ୍ୱିତୀୟ ପତ୍ନୀଙ୍କ ବିଚ୍ଛେଦ ହରିହରଙ୍କୁ ଚିରଦିନ ପାଇଁ 'ଭୀଷ୍ମ' କରିଦେଲା ଯେପରି । ଗାର୍ହସ୍ଥ୍ୟାଶ୍ରମ ପ୍ରତି ତାଙ୍କର ଏତାଦୃଶ ବୈରାଗ୍ୟ ସମସ୍ତଙ୍କୁ ଦୁଃଖିତ କରିଥିଲା, ହେଲେ ହରିହରଙ୍କର ଦୃଢ଼ତା ଆଗରେ କାହାର କିଛି କରିବାର ନଥିଲା । ଏହାପରେ ଆରମ୍ଭ ହୋଇଥିଲା ଜଣେ ବିବାହିତ ବ୍ରହ୍ମଚାରୀ ଜୀବନ-କାହାଣୀର ନୂତନ ଅଧ୍ୟାୟ ।

# ଶିକ୍ଷାର୍ଥୀ ହରିହର

ଏକ ବାଞ୍ଛିତ ସାମାଜିକ ବ୍ୟକ୍ତି ହିସାବରେ କେତେକ ସାମାଜିକ ପ୍ରତ୍ୟାଶାକୁ ସାକାର କରିବା ପାଇଁ ବା ଚରିତାର୍ଥ କରିବା ପାଇଁ ତଥା ଶିକ୍ଷାକୁ ଆଧାର କରି ବୃତ୍ତିଗତ ପ୍ରତିଷ୍ଠା ଅର୍ଜନ ପାଇଁ ଶିଶୁ ପାରିବାରିକ ବନ୍ଧନରୁ ବ୍ୟକ୍ତିଗତ ଅନିଚ୍ଛାସତ୍ତ୍ୱେ ବିଦ୍ୟାଳୟରେ ପ୍ରବେଶ କରେ । ଉପଯୁକ୍ତ ଶିକ୍ଷକ, ଆଦର୍ଶ ମାର୍ଗ ପ୍ରଦର୍ଶକ ଓ ସତ୍‌ସଙ୍ଗ ସଂପର୍କରେ ଆସି ନିଜ ଅନ୍ତର୍ନିହିତ ଗୁଣାବଳୀର ପ୍ରକାଶ କରିବା ପାଇଁ ସୁଯୋଗ ପାଇଥାଏ । ''ପୂର୍ବଜନ୍ମାର୍ଜିତ ବିଦ୍ୟା, ପୂର୍ବଜନ୍ମାର୍ଜିତ ଭାର୍ଯ୍ୟା, ପୂର୍ବଜନ୍ମାର୍ଜିତ ଧର୍ମ ଅଗ୍ରେ ଧାବତି...'' ହିନ୍ଦୁ ଦର୍ଶନର ଏହି ଶ୍ଳୋକ କେଇ ପଦର ସତ୍ୟତା ହରିହରଙ୍କର ବାଲ୍ୟ ଜୀବନୀରୁ ବେଶ୍ ଉପଲବ୍ଧି କରିହୁଏ । ବାସ୍ତବରେ ହରିହର ଦାସ ଥିଲେ ଆବାଲ୍ୟ ଶିକ୍ଷକ । ସଂସ୍କାରବଶତଃ ତାଙ୍କର ଅନ୍ତର୍ନିହିତ ଗୁଣାବଳୀ ସ୍ୱତଃ ବିକଶିତ ହୋଇଥିଲା । ତାଙ୍କର ବଂଶଲତାକୁ ଅବଲୋକନ କଲେ ହରିହରଙ୍କର ଶିକ୍ଷାର୍ଥୀ ଜୀବନର ସଫଳତା ପଛରେ ଥିବା ଲୁକ୍କାୟିତ କାରକଗୁଡ଼ିକୁ ଆବିଷ୍କାର କରିହେବ ।

ହରିହରଙ୍କର ପୂର୍ବ ବଂଶଜ (ପିତାମହ) ଶ୍ରୀ ଜଗନ୍ନାଥ ଦାଶ ଥିଲେ ଜଣେ ବିଚକ୍ଷଣ ପଣ୍ଡିତ । ପୁରୀ ରାଜାଙ୍କର ଅନ୍ୟ ପଣ୍ଡିତମାନଙ୍କର ଈର୍ଷାର ଶରବ୍ୟ ଥିଲା ତାଙ୍କର ଅଗାଧ ପାଣ୍ଡିତ୍ୟ । ତାଙ୍କ ସମୟରେ ଶ୍ରୀଜଗନ୍ନାଥଙ୍କର ନବକଳେବର ପାଇଁ ଯଜ୍ଞବେଦୀ ପ୍ରସ୍ତୁତ ହେଉଥାଏ, କାଳେ ଶ୍ରୀ ଜଗନ୍ନାଥ ଦାଶ ବେଦୀ ନିର୍ମାଣରେ ତ୍ରୁଟି ଆବିଷ୍କାର କରି ପୁରୀ ରାଜାଙ୍କୁ ଅବଗତ କରାଇ ଦେବେ, ଏହି ଆଶଙ୍କାରେ ଜଗନ୍ନାଥ ଦାଶଙ୍କୁ କେହି ନିମନ୍ତ୍ରଣ କରିନଥାନ୍ତି । ମାତ୍ର ଜଗନ୍ନାଥ ଦାଶ ଠିକଣା ସମୟରେ ବେଦୀ ନିକଟରେ ନିଜର ପୋଥିପତ୍ର ସହ ଉପସ୍ଥିତ ହୋଇ ଅତ୍ୟନ୍ତ ବିନମ୍ରତାର ସହ ଯଜ୍ଞବେଦୀ ନିର୍ମାଣରେ ହୋଇଥିବା ବିଧିଗତ ତ୍ରୁଟି ସମ୍ବନ୍ଧରେ ଅବଗତ କରାଇ ଉଦ୍ଧତ ପଣ୍ଡିତମାନଙ୍କର ଅହଂକାର ମୋଚନ କରିଥିଲେ । ଶ୍ରୀ ଜଗନ୍ନାଥ ଦାଶଙ୍କର ବିଚକ୍ଷଣ

ପାଣ୍ଡିତ୍ୟରେ ମୁଗ୍ଧ ହୋଇ ପୁରୀ ରାଜା ତାଙ୍କୁ ଯଜ୍ଞର ପୁସ୍ତକାଚାର୍ଯ୍ୟ ଭାବରେ ବରଣ କରିବା ସଙ୍ଗେ ସଙ୍ଗେ ଯଜ୍ଞ ଶେଷରେ ଜଗନ୍ନାଥ ଦାଶଙ୍କୁ ଉପାଧି ଦେବା ପାଇଁ ସ୍ଥିର କରିଥିଲେ । ମାତ୍ର ଉପାଧି ଗ୍ରହଣ ନକରି ନମ୍ରତାର ସହ ଜଗନ୍ନାଥ ଦାଶ କହିଥିଲେ, "ମୁଁ ତ ବୁଢ଼ା ହେଲିଣି । ଉପାଧି ଆଉ କେତେ କାଳ ଭୋଗ କରିବି ?" ଜଗନ୍ନାଥ ଦାଶଙ୍କର ଏତାଦୃଶ ଉତ୍ତରରେ ରାଜା ନିଜର ବିଚାର ପରିବର୍ତ୍ତନ କରି ବଡ଼ପୁଅ ମହାଦେବଙ୍କୁ 'ବ୍ରହ୍ମା' ଉପାଧି ଓ ସାନପୁଅ ବନମାଳୀଙ୍କୁ "ପଢ଼ଯୋଷୀ" ଉପାଧି ପ୍ରଦାନ କରି ତାଙ୍କୁ ସନ୍ତୁଷ୍ଟ କଲେ । ଜଗନ୍ନାଥ ଦାଶଙ୍କ ସୁପୁତ୍ର ମହାଦେବ ବ୍ରହ୍ମା ରାୟଚକ୍ରଧରପୁର ଓ ଶ୍ରୀରାମଚନ୍ଦ୍ରପୁର ଭର୍ଣ୍ଣାକୁଲାର ସ୍କୁଲରେ ଜଣେ କୁଶଳୀ, ଛାତ୍ରବତ୍ସଳ ଓ ପଣ୍ଡିତ ଶିକ୍ଷକ ଭାବରେ ଦକ୍ଷତାର ସହ କାର୍ଯ୍ୟ ତୁଲାଇ ଆସୁଥିଲେ । ମହାଦେବ ବ୍ରହ୍ମା ନିଜର ଉପାଧିକୁ ପୁତ୍ର ହରିହରଙ୍କୁ ଅନ୍ତରିତ କରି ପୁତ୍ରର ନାମ ରଖିଥିଲେ ହରିହର ବ୍ରହ୍ମା । ବାଲ୍ୟାବସ୍ଥାରେ ସଚେତନତାର ଅଭାବରୁ ହରିହରଙ୍କର ଏହି ନାମ ରହିଆସିଥିଲା । ପୁତ୍ର ନାମରେ ତ୍ରିଦେବଙ୍କୁ ଏକତ୍ରିତ କରି ପିତା ଆଶ୍ୱସ୍ତ ହୋଇଥିଲେ । ମାତ୍ର ନମ୍ରତାର ପ୍ରତୀକ ହରିହର 'ବ୍ରହ୍ମା' ଉପାଧିକୁ ଗ୍ରହଣ କରିନଥିଲେ । ଅନ୍ୟ କେତେକଙ୍କର ମତରେ ବନ୍ଦୋବସ୍ତ ସମୟରେ ବ୍ରହ୍ମା ଉପାଧି ଉଠିଯାଇଥିଲା । ତେବେ ସେ ଯାହାହେଉ ସାବତମା'ଙ୍କ ହେପାଜତରେ ଓ ପିତାଙ୍କର ପ୍ରଯତ୍ନରେ ଶିଶୁ ହରିହର ବାଳକ ଅବସ୍ଥା ପ୍ରାପ୍ତ ହୋଇ ଚାଲିଲେ ଗାଁ ଚାଟଶାଳୀକୁ ପାଠ ପଢ଼ିବାକୁ । ଅନ୍ୟ ଛାତ୍ରଛାତ୍ରୀମାନଙ୍କ ଅପେକ୍ଷା ସେ ପ୍ରାରମ୍ଭରୁ ଶିକ୍ଷାର୍ଜନରେ ଆଗ୍ରହୀ ଥିଲେ ।

ଗ୍ରାମ ଚାଟଶାଳୀରୁ ଶୀଘ୍ର ପ୍ରାରମ୍ଭିକ ବିଦ୍ୟା ସମାପ୍ତ କରି ହରିହର ଯୋଗଦେଲେ ଗ୍ରାମର ଭର୍ଣ୍ଣାକୁଲାର ସ୍କୁଲରେ । ଭର୍ଣ୍ଣାକୁଲାର ବିଦ୍ୟାଳୟରେ ଇଂରାଜୀ ଶିକ୍ଷା ଦିଆଯାଉନଥିଲା । ଇଂରାଜୀ ପାଠପଢୁଥିବା ଓଡ଼ିଆମାନେ ପ୍ରଭୂତ ଅର୍ଥ ଓ କ୍ଷମତା ଲାଭ କରୁଥିବାରୁ ଉଚ୍ଚାକାଙ୍କ୍ଷୀ ଅଭିଭାବକମାନେ ନିଜର ସନ୍ତାନସନ୍ତତିମାନଙ୍କୁ ଇଂରାଜୀ ଶିକ୍ଷା ଦେବା ପାଇଁ ପ୍ରଯତ୍ନ କରୁଥିଲେ । ତେଣୁ ତତ୍କାଳୀନ କେତେକ ପ୍ରତିଷ୍ଠିତ ବ୍ୟକ୍ତି ଯଥା ଶ୍ରୀ ଗୋପୀନାଥ ଦାଶ, ଡେପୁଟି ମାଜିଷ୍ଟ୍ରେଟ୍‌ଙ୍କର ଉଦ୍ୟମ କ୍ରମେ ଶ୍ରୀରାମଚନ୍ଦ୍ରପୁରରୁ ଭର୍ଣ୍ଣାକୁଲାର ସ୍କୁଲ ଉଠିଯାଇ ସତ୍ୟବାଦୀ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ପରିଣତ ହେଲା । ପୂର୍ବରୁ ଭର୍ଣ୍ଣାକୁଲାର ବିଦ୍ୟାଳୟରେ ସପ୍ତମ ଶ୍ରେଣୀ

ଯାଏଁ ବ୍ୟବସ୍ଥା ଥିଲେ ମଧ ଇଂରାଜୀ ଶିକ୍ଷା ନଥିଲା ମାତ୍ର ମଧ-ଇଂରାଜୀ ସ୍କୁଲ ହେବା ପରେ ଇଂରାଜୀ ଶିକ୍ଷା ପ୍ରଚଳିତ ହେଲା । ଗ୍ରାମ ଭର୍ଣ୍ଣାକୁଲାର ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ପଣ୍ଡିତ ଶ୍ରୀ ମଧୁସୂଦନ ମିଶ୍ର । ମହାଦେବ ବ୍ରହ୍ମା ଥିଲେ ଦ୍ୱିତୀୟ ଶିକ୍ଷକ । ତେଣୁ ପିତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ । ମଧୁସୂଦନଙ୍କର ଆଦର୍ଶରେ ହରିହରଙ୍କର ଛାତ୍ର ଚରିତ ସୁସଂହତ ଓ ସୁସଂଗଠିତ ହୋଇପାରିଥିଲା ।

ସେହି ବୟସରୁ ହରିହରଙ୍କର ସମାଜସଂସ୍କାର ମନୋଭାବର ସ୍ପଷ୍ଟ ପରିଚୟ ମିଳିଥିଲା । ନିରକ୍ଷରତାକୁ ଏକ ସାମାଜିକ ବ୍ୟାଧି ଭାବରେ ହୃଦୟଙ୍ଗମ କରି ସ୍ୱାଧୀନୋତ୍ତର ଭାରତବର୍ଷର ସମ୍ବିଧାନର ୪୫ ଧାରା ସିନା ୧୯୬୧ ମସିହା ସୁଦ୍ଧା ସଂପୂର୍ଣ୍ଣ ସାକ୍ଷରତା ପ୍ରବର୍ତ୍ତନ ନିମିତ୍ତ ନିର୍ଦ୍ଦେଶ ପ୍ରଦାନ କଲା, ହେଲେ ଆଜି ପର୍ଯ୍ୟନ୍ତ ଆମ ଦେଶ ପୂର୍ଣ୍ଣ ସାକ୍ଷରତା ସ୍ତରରେ ଉପନୀତ ହୋଇ ପାରିନଥିଲେ ମଧ ସାର୍ବଜନୀନ ବାଧ୍ୟତାମୂଳକ ଅବୈତନିକ ପ୍ରାଥମିକ ଶିକ୍ଷା, କଳାପଟା ଅଭିଯାନ, ଜନଶିକ୍ଷା, ଜାତୀୟ ସାକ୍ଷରତା ମିସନ ଗଠନ ଆଦି ପ୍ରବର୍ତ୍ତିତ ହୋଇ ସାକ୍ଷରତାର ବିକାଶ ନିମିତ୍ତ ବ୍ୟାପକ ଉଦ୍ୟମ ଅପ୍ରତିହତ ରହିଛି । କିନ୍ତୁ ପରାଧୀନ ଭାରତ ବର୍ଷରେ ନିରକ୍ଷରତା ଥିଲା ଶୋଷଣକାରୀ ଇଂରେଜ ସରକାରଙ୍କ ପାଇଁ ଏକ ଆଶୀର୍ବାଦ । ଗ୍ରାମାଞ୍ଚଳର ନିରକ୍ଷରମାନଙ୍କୁ କିଏ ପଚାରେ ?

ଅଧିକ ସଂଖ୍ୟକ ଭୋଟ ଅର୍ଜନର ସ୍ୱାର୍ଥକୁ ଆଖିଆଗରେ ରଖି ସମାଜସଂସ୍କାରର ପ୍ରତିଶ୍ରୁତି ପ୍ରଦାନ କରି ପୀଡ଼ିତମାନଙ୍କର ପ୍ରାଣରେ ଆଶାର ସଞ୍ଚାର କରାଇଥାନ୍ତି ରାଜନୈତିକ ନେତାଗଣ, କିନ୍ତୁ ସାମାଜିକ ବିକୃତିକୁ ଆବିଷ୍କାର କରି ନୀରବ ଭାବରେ ସେଗୁଡ଼ିକର ମୂଳୋତ୍ପାଟନ କରି ନବଜୀବନ ସଞ୍ଚାର କରିଥାନ୍ତି ଜନନେତାମାନେ । ଏହାହିଁ ରାଜନେତା ଓ ଜନନେତାଙ୍କ ମଧ୍ୟରେ ମୌଳିକ ପାର୍ଥକ୍ୟ । ପରାଧୀନ ଭାରତ ବର୍ଷରେ ଇଂରେଜ ଅତ୍ୟାଚାରର ଘନଘଟା ଭିତରେ ଏକ କୋମଳମତି ଛାତ୍ର ମନରେ 'ଜନଶିକ୍ଷା' ପରି ମହତ୍ତ୍ୱପୂର୍ଣ୍ଣ ସମାଜସଂସ୍କାର କିପରି ସ୍ଥାନ ପାଇ ପାରିଥିଲା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଗ୍ରାମରେ ପ୍ରୌଢ଼ଶିକ୍ଷା ଆନ୍ଦୋଳନର ସୂତ୍ରପାତ ହୋଇଥିଲା କୌଣସି ବିଜ୍ଞ ପ୍ରତିଷ୍ଠିତ ବୟସ୍କ ରାଜନେତା ବା ଜନନେତା

ଦ୍ୱାରା ନୁହେଁ, ଜଣେ ଅପ୍ରାପ୍ତବୟସ୍କ ଅଜାତଶ୍ମଶ୍ରୁ ଭର୍ଣ୍ଣାକୁଲାର ବିଦ୍ୟାଳୟର ଛାତ୍ର ଦ୍ୱାରା । ଗ୍ରାମର ନିରକ୍ଷର ପ୍ରୌଢ଼ମାନଙ୍କୁ ଏକତ୍ରିତ କରି ହରିହର ରାମାୟଣ ଓ ମହାଭାରତ ପଢ଼ି ଶୁଣାଉଥିଲେ । ଗ୍ରାମର ନିରକ୍ଷରମାନଙ୍କୁ ଶିକ୍ଷାର୍ଥୀ ଅବସ୍ଥାରେ ଶିକ୍ଷାପ୍ରଦାନ କରିବା ପାଇଁ ଯାଇ ହରିହର ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ଘରେ ଅନୁପସ୍ଥିତ ରହୁଥିଲେ । ତାଙ୍କର ବିଳମ୍ବରେ ବ୍ୟତିବ୍ୟସ୍ତ ହୋଇ ଥରେ ତାଙ୍କର ମା' ପଚାରିଥିଲେ, ''ଏତେ ଡେରି ଯାଏ କେଉଁଠି ରହୁଛୁ ?'' ଗେହ୍ଲାପୁଅ 'ହରି' ଏତେ ଲୋକଙ୍କୁ ପାଠ ପଢ଼ାଉଥିବାର ଶୁଣି ନିରକ୍ଷରା ମା'ଙ୍କର ବକ୍ଷ ଗର୍ବରେ ସ୍ଫୀତ ହୋଇଯାଇଥିଲା । ମା'ଙ୍କର ମନରେ ବି ଶିକ୍ଷାଗ୍ରହଣର ଅଭିଳାଷ ବସା ବାନ୍ଧିଥିଲା । ତେଣୁ ସେ କହିଥିଲେ, ''ଆରେ ପୁଅ ମୋତେ ଟିକେ ଅକ୍ଷର ଶିଖାନ୍ତୁନାହିଁ ?'' ବାସ୍, ଗେହ୍ଲାପୁଅ ହରିହର ସେହିଦିନଠାରୁ ମା'ଙ୍କର ଶିକ୍ଷକ ବନିଯାଇଥିଲେ ।

ଗ୍ରାମର ଭର୍ଣ୍ଣାକୁଲାର ସ୍କୁଲରୁ ସଫଳତାର ସହ ଉତ୍ତୀର୍ଣ୍ଣ ହୋଇ ହରିହର ମାସିକ ୪ଟଙ୍କା ବୃତ୍ତି ଲାଭ କଲେ । ପିତାଙ୍କର ଆୟ ଉପରେ ଆଉ ନିର୍ଭର କରିବାକୁ ପଡ଼ିବ ନାହିଁ ବୋଲି ଚିନ୍ତା କରି ହରିହର ବେଶ୍ ଆତ୍ମପ୍ରସାଦ ଅନୁଭବ କରୁଥିଲେ । ସେ ପୁରୀର ଜିଲ୍ଲାସ୍କୁଲରେ ତାଙ୍କର ଉଚ୍ଚଶିକ୍ଷା ଆରମ୍ଭ କଲେ । ଗ୍ରାମ ଛାଡ଼ି ଆସିଥିବାରୁ ପିତାଙ୍କର ବ୍ୟବସ୍ଥା କ୍ରମେ ହରିହର ପ୍ରଥମେ ଜଣେ ସଂପର୍କୀୟ (ମାମୁଅଜା)ଙ୍କ ଘରେ ରହି ପଢ଼ାପଢ଼ି କରୁଥିଲେ । ମାମୁଅଜାଙ୍କର ଘରେ ତାଙ୍କର ପାଠପଢ଼ା ଯାବତୀୟ ବିଶୃଙ୍ଖଳା ଯୋଗୁଁ ଅଧିକ ଦିନ ଅବ୍ୟାହତ ରହିପାରିଲା ନାହିଁ । ତେଣୁ ସେ ମାମୁଅଜା ଘରୁ ଯାଇ ଏକ ମେସ୍‌ରେ ରହିବାକୁ ଆରମ୍ଭ କଲେ । ଅନଭିଜ୍ଞ ହସ୍ତର ଭାତ ଓ ପରିବା ଚକଟା କୁଶଳୀ ମାଈଁଆଇଙ୍କର ସୁସ୍ୱାଦୁ ବ୍ୟଞ୍ଜନ ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା । ତାଙ୍କର ମେସ୍ ରହଣି ସମ୍ବନ୍ଧରେ ସେ ନିଜ ଦୈନିକ ଲିପିରେ ଲିପିବଦ୍ଧ କରିଯାଇଛନ୍ତି । ସେଥିରୁ କିଛି ଉଦ୍ଧାର କରିବା ପ୍ରାସଙ୍ଗିକ ମନେକରୁଛୁ ।

''ସେତେବେଳେ ଆମେ ସକାଳେ ଭାତ ରାନ୍ଧୁ । ସେଥିରେ ବାଇଗଣ, ସାରୁ, ଆଳୁ ଯାହାଥାଏ ତାକୁ ସିଝାଇ ନେଉ ଓ ଡାଲି (ମୁଗ) ଥିଲେ କନାରେ ବାନ୍ଧି ସେଇ ଭାତହାଣ୍ଡିରେ ପକାଇ ସିଝାଇ ନେଲାପରେ ସେହି ସିଝା ଡାଲିକୁ ଅଣକରେ ଚକଟି ସେଥିରେ ପେଜ ମିଶାଇ ଲୁଣଟିକିଏ ଦେଇ ଡାଲି କରୁ । ବାଇଗଣ କଖାରୁ ଯାହା ସିଝା ହୋଇଥାଏ ତାକୁ ଚକଟା କରୁ । ସକାଳେ ଭାତ ଡାଲି ଖାଉ । ରାତିକୁ ସେହି ସକାଳର ରନ୍ଧାଭାତ ପଖାଳ ଓ ଚକଟା ଖାଉ । କେବେ କେବେ ଗ୍ରାମରୁ କେହି ଆସିଲେ

ରାତି ଓଳି ରାନ୍ଧି ଦିଅନ୍ତି । ସେଦିନକ ସୁଖରେ ତବତ ଭାତ, ଡାଲି ରାତିରେ ମଧ ଖାଉ । ଦୁଇଓଳି ରୋଷେଇ କରି ଖାଇବାକୁ ଇଚ୍ଛା ଥିଲେ ମଧ ପାଠପଢ଼ାରୁ ଏତେ ସମୟ ରୋଷେଇରେ ଦେବାକୁ ସମୟ ନଥାଏ ।'' ପୁରୀର ଜିଲ୍ଲାସ୍କୁଲ ହରିହରଙ୍କର ଚରିତ୍ରକୁ ପୂର୍ଣ୍ଣାଙ୍ଗ ରୂପ ପ୍ରଦାନ କରିଥିଲା । ଏଇଠି ତାଙ୍କର ଜ୍ଞାତିଭାଇ ଗୋପୀ ଭାଇନାଙ୍କ ବସାରେ ପ୍ରାୟ ୧ ବର୍ଷ ରହିଥିଲେ । ସେହି ଗୋପୀଭାଇନା ସତ୍ୟବାଦୀ ଯୁଗର ଏକ ଅବିସ୍ମରଣୀୟ ଚରିତ୍ର । ଗୋପୀଭାଇନା ଗୋପବନ୍ଧୁ ଓ ହରିହରଙ୍କ ମଧରେ ଯୋଗସୂତ୍ର ସ୍ଥାପନ କରି ସେବା, ସମାଜସଂସ୍କାର ନିମିତ୍ତ ଏକ ନବଯୁଗର ପ୍ରବର୍ତ୍ତନ କରିଥିଲେ । ଗୋପବନ୍ଧୁଙ୍କ ସହ ପ୍ରଥମ ସାକ୍ଷାତ୍ ହରିହରଙ୍କ ପାଇଁ ଏକ ଅବିସ୍ମରଣୀୟ ଘଟନା । ହରିହରଙ୍କ ଭାଷାରେ ''ମୁଁ ପୁରୀ ଆସିବା ପରଦିନ ଗୋପୀ ଭାଇନାଙ୍କ ସାଙ୍ଗରେ ଦାସେ ଆପଣେଙ୍କୁ ଭେଟିବାକୁ ଗଲି । ବାଟରେ ଆପଣେ ଆସୁଥିବାର ଦେଖିଲି । ମୁଁ ପିନ୍ଧି ଯାଇଥିଲି ରଙ୍ଗଣୀ ଖଦୀ । ଦାସେ ଆପଣେଙ୍କୁ ଦେଖିଲି, ସେ ପିନ୍ଧିଥିଲେ କଳାପାହାଡ଼ ଖଦୀ, ଅବଶ୍ୟ ମୋ ଖଦୀଠାରୁ ଅଳ୍ପ ସରୁ । ତାଙ୍କର ଏ ବେଶଭୂଷା ଦେଖି ମୋର ବିଲାତି ପତଳା ଲୁଗା ପିନ୍ଧିବାର କଳ୍ପନା ଏକାବେଳକେ ଉଭେଇଗଲା । ଦାସେ ଆପଣେଙ୍କ ସହିତ ଆଳାପ ହେବାପରେ ସେ ମୋତେ ଅତି ଆପଣାର କରିନେଲେ । ମୁଁ ମୋ ଜୀବନରେ କାହାରିକୁ ଗୁରୁ କରିବା ମୋର ମନେ ନାହିଁ । ଏପରିକି ମୋର କର୍ଣ୍ଣଦାତା ଗୁରୁ ମଧ କେହି ନାହାନ୍ତି । ମୋ ନନା ମୋତେ ଅନେକ ଥର ମନ୍ତ୍ରଗୁରୁ କରିବା ପାଇଁ କହିଛନ୍ତି । କିନ୍ତୁ ମୁଁ ସେଥିରେ ରାଜି ହୋଇନାହିଁ । କାରଣ ମୁଁ ଯେଉଁଦିନ ଦାସେ ଆପଣେଙ୍କୁ ପ୍ରଥମେ ଭେଟିଲି, ସେହିଦିନଠାରୁ ତାଙ୍କୁ ଗୁରୁ ଆସନରେ ବସାଇ ସାରିଥିଲି ।'' ମାନସଗୁରୁ ଭାବରେ ଗୋପବନ୍ଧୁଙ୍କୁ ନୀରବ ଭାବରେ ଗ୍ରହଣ କରି ହରିହର ଶିକ୍ଷା କରିଥିଲେ ଯୁବଶକ୍ତିକୁ ଦୈବୀଦୁର୍ବିପାକ ବିରୁଦ୍ଧରେ ସଂଗଠିତ କରିବାର କୌଶଳ ।

୧୯୦୧ ମସିହାରେ ଏଣ୍ଟ୍ରାନ୍ସ ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ହରିହର ରେଭେନ୍ସା କଲେଜରେ ଏଫ୍.ଏ. ପଢ଼ିଲେ । ଏଫ୍.ଏ. ପଢୁଥିବା ସମୟରେ ହରିହର ଓକିଲାତି ପ୍ରତି ଆକୃଷ୍ଟ ହେଲେ । ତେଣୁ ଏଫ୍.ଏ. ପାସ୍ କରିସାରିବା ପରେ ସେ ପି.ଏଲ୍. ପଢ଼ିଲେ । ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେବା ଆଶାରେ ସେ କଲିକତା ଗଲେ । ମାତ୍ର ଶିକ୍ଷକତା ତାଙ୍କୁ ହାତଠାରି ଆହ୍ୱାନ ଦେଉଥିଲା । ଅନ୍ତିମ ପରୀକ୍ଷା ନଦେଇ ସେ ପ୍ରତ୍ୟାବର୍ତ୍ତନ କଲେ ଓ ପୁରୀଜିଲ୍ଲା ସ୍କୁଲରେ ଶିକ୍ଷକତା କଲେ ।

# ଶିକ୍ଷକତା

ନିର୍ଦ୍ଦିଷ୍ଟ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ପାଠ୍ୟକ୍ରମକୁ ଏକ ନିର୍ଦ୍ଦିଷ୍ଟ ସମୟାନ୍ତରରେ ସମାପ୍ତ କରି ଛାତ୍ରଛାତ୍ରୀମାନଙ୍କୁ ମାନପତ୍ର ହାସଲ ନିମନ୍ତେ ପ୍ରସ୍ତୁତ କରିବା ଶିକ୍ଷକତା ନୁହେଁ । ଶିକ୍ଷା ଏକ ଜୀବନବ୍ୟାପୀ ପ୍ରକ୍ରିୟା । ଶିକ୍ଷା ଗ୍ରହଣ ଓ ଶିକ୍ଷା ପ୍ରଦାନ ଏକ ନିରବଚ୍ଛିନ୍ନ ସାଧନା । ଶିକ୍ଷା ବିନା ନର ବାନରତୁଲ୍ୟ ଅବାଂଛିତ ଓ ନିଷ୍କ୍ରିୟ ହୋଇଯାଇଥାଏ । ପାପପୁଣ୍ୟ, ଭଲମନ୍ଦ, ସୃଷ୍ଟି-ବିଲୟ ସମ୍ବନ୍ଧରେ ଚେତନା ଶିକ୍ଷା ଯୋଗୁଁ ସମ୍ଭବ ହୋଇଥାଏ । ଶିକ୍ଷାପରି ପବିତ୍ର ବସ୍ତୁ ଜଗତରେ କିଛି ନାହିଁ ( ନ ଚ ହି ଜ୍ଞାନ ସଦୃଶ ପବିତ୍ର ମିହ ବିଦ୍ୟତେ) କି ଅଶିକ୍ଷା ପରି ପାପ ଆଉ କିଛି ନାହିଁ । କୁସଂସ୍କାରାଚ୍ଛନ୍ନ ମାନବ ହିଁ ହଇଜା ଓ ବସନ୍ତ ଲାଗିଲେ ଗ୍ରାମଦେବତୀଙ୍କ ପାଇଁ ପଣା ଓ ଝୁଣାର ଆୟୋଜନ କରିଥାଏ । ଆୟୁର୍ବିଦ୍ୟା ସ୍ଥାନରେ ଏତାଦୃଶ ଅବିଦ୍ୟାର ପ୍ରୟୋଗରେ ହତଭାଗ୍ୟ ବ୍ୟକ୍ତିଟି ନିଜକୁ ବା ନିଜ ପ୍ରିୟଜନକୁ ମୃତ୍ୟୁମୁଖକୁ ଠେଲିଦିଏ । ଅଜ୍ଞାନତା ହେଉଛି ଅନ୍ଧକାର ସହ ତୁଳନୀୟ ଓ ଶିକ୍ଷା ଅଜ୍ଞାନତା ପରି ଅନ୍ଧତ୍ୱ ବିନାଶ କରେ ଓ ଜ୍ଞାନଚକ୍ଷୁକୁ ଉନ୍ମୁକ୍ତ କରେ । ଶିକ୍ଷକ ଏହି ପ୍ରକ୍ରିୟାର ସର୍ବୋଚ୍ଚ କର୍ତ୍ତା । ତେଣୁ ବୈଦିକ ପରମ୍ପରାରେ ଶିକ୍ଷକଙ୍କୁ ଗୁରୁ ଭାବରେ ମାନ୍ୟତା ପ୍ରଦାନ କରି କୁହାଯାଇଛି –

ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକୟା
ଚକ୍ଷୁ ନିର୍ମିଳିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।

୧୯୦୨ ମସିହାର ଘଟଣା । ଗୋପବନ୍ଧୁଙ୍କ ସ୍ୱପ୍ନର ତିନିଜଣ ଆଦର୍ଶ ଶିକ୍ଷାୟତନକୁ ସାକାର କରିବା ପାଇଁ ଉଦ୍ୟମୀ ନବ ପ୍ରତିଭା ବିମଣ୍ଡିତ ଉତ୍ସାହୀ ଯୁବକଙ୍କର ସମ୍ମିଳନୀ ହୁଏ ସତ୍ୟବାଦୀ ନିକଟ ଭାର୍ଗବୀ ନଦୀ ବନ୍ଧ ଉପରେ । ଏହି ତିନିଜଣ ଯୁବକ ହେଲେ ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର ଓ ପ୍ରଚାରକ ଅନନ୍ତ ମିଶ୍ର ।

ସରକାରୀ ଚାକିରି ଦ୍ୱାରା ସେମାନଙ୍କର ସ୍ୱପ୍ନର ବନବିଦ୍ୟାଳୟ ସ୍ୱପ୍ନରେ ରହିଯିବାର ଆଶଙ୍କା ଥିଲା । ସରକାରୀ ଚାକିରିର କଠୋର ଆଚରଣ ବିଧି ହୁଏତ ସେମାନଙ୍କୁ ଦେଶସେବା ଓ ସମାଜସଂସ୍କାରରୁ ନିବୃତ୍ତ କରିପାରେ, ଏହା ଚିନ୍ତା କରି ସେମାନେ ସରକାରୀ ଚାକିରି କରିବେ ନାହିଁ ବୋଲି ଦୃଢ଼ ନିଷ୍ପତ୍ତି ନେଲେ । ''ସରକାରୀ ଚାକିରି କରିବା ନାହିଁ, ନିଜର ଭରଣ ପୋଷଣ ଓ ବିଳାସରେ ମନଦେବା ନାହିଁ, ଜନ୍ମ ହୋଇ ଦେଶକୁ ଯାହା ଦେଖିଥାଇ, ମଲାବେଳେ ତା'ଠାରୁ ଉନ୍ନତତର ଅବସ୍ଥାରେ ଛାଡ଼ିଯିବା ଓ ସେଥିପାଇଁ ବରାବର ପ୍ରଯତ୍ନରେ ରହିବା ।'' ଏହାହିଁ ଥିଲା ସେହି ତିନିଜଣଙ୍କର ଦୃଢ଼ ସଂକଳ୍ପ ।

ବି.ଏ. ପାସ ପରେ ପଣ୍ଡିତ ଗୋପବନ୍ଧୁ ପ୍ରଥମେ କିଛିଦିନ ପାଇଁ ନୀଳଗିରି ହାଇସ୍କୁଲରେ ଶିକ୍ଷକତା କରିଥିଲେ । ଏହାର ଅଳ୍ପଦିନ ପରେ ସେ କଲିକତା ଚାଲିଗଲେ ଆଇନ୍ ବିଦ୍ୟା ଅଧ୍ୟୟନ କରିବା ପାଇଁ । ଓକିଲାତି ପାସ କରି ସାରି ପୁଣିଥରେ ନୀଳଗିରିଠାରେ ସେ ଶିକ୍ଷକତା ଆରମ୍ଭ କଲେ । ଅନ୍ୟ ପକ୍ଷରେ ହରିହର ଏଫ୍.ଏ. ପାସ କରି ଓକିଲାତି ପଢ଼ା ଆରମ୍ଭ କରିଥିଲେ । ଆଇନ୍ ଅଧ୍ୟୟନ ପ୍ରତି ତାଙ୍କର ହଠାତ୍ ବୈରାଗ୍ୟ ଆସିଗଲା । ତେଣୁ ଓକିଲାତି ପଢ଼ା ଛାଡ଼ି ସେ ପୁରୀ ଜିଲ୍ଲାସ୍କୁଲରେ କିଛି ଦିନ ସରକାରୀ ଶିକ୍ଷକତା କରିଥିଲେ । ମାତ୍ର ସରକାରୀ ଚାକିରି କରିବେ ନାହିଁ ବୋଲି ସଂକଳ୍ପବଦ୍ଧ ହୋଇ ନୀଳଗିରି ସ୍କୁଲରେ ଆସି ଶିକ୍ଷକତା କଲେ । ହରିହର ନୀଳଗିରି ଗଲାବେଳକୁ ଉମାଚରଣ ଦାସ ପ୍ରଧାନ ଶିକ୍ଷକ ଥାଆନ୍ତି । ତାଙ୍କ ପରେ ଗୋପବନ୍ଧୁ ଦାସ ପ୍ରଧାନ ଶିକ୍ଷକ ହୋଇଥିଲେ । ହରିହର ସହକାରୀ ପ୍ରଧାନ ଶିକ୍ଷକ ପଦବୀରେ ଥାଆନ୍ତି । ସ୍କୁଲକୁ ଭଲଭାବରେ ଗଢ଼ିବା ପାଇଁ ପ୍ରବଳ ଉଦ୍ୟମ ଚାଲିଥାଏ । ମାତ୍ର ହଠାତ୍ ସେହି ସ୍କୁଲର ଭାଗ୍ୟାକାଶ ମେଘାଚ୍ଛନ୍ନ ହୋଇଗଲା । ଥରେ ପଲିଟିକାଲ ଏଜେଣ୍ଟ (ଇଂରେଜ ରାଜପ୍ରତିନିଧି) କବଡ଼େନ୍ ରାମସେ ଆସିଥାନ୍ତି । ବଙ୍ଗଦେଶରେ ସେତେବେଳକୁ ଜାତୀୟ ଆନ୍ଦୋଳନ ଦାନା ବାନ୍ଧୁଥାଏ । ତେଣୁ କବଡ଼ନ୍ ଏହି ପ୍ରକାର ବିଦ୍ୟାଳୟ ପ୍ରତିଷ୍ଠାକୁ ସନ୍ଦେହ କରି ତାକୁ ଭାଙ୍ଗିଦେବା ପାଇଁ ପରାମର୍ଶ ଦେଲେ । ତେଣୁ ସ୍କୁଲ ଭାଙ୍ଗିଗଲା । ଭଗ୍ନମନୋରଥ ନେଇ ହରିହର ପ୍ୟାରୀମୋହନ

ଏକାଡେମୀକୁ ଚାଲିଆସିଲେ । ସେଠାରେ ନିଜର ଦକ୍ଷତା ଯୋଗୁଁ ଅଳ୍ପଦିନରେ ସହକର୍ମୀ ଓ ଛାତ୍ରମାନଙ୍କର ପ୍ରିୟପାତ୍ର ହୋଇଗଲେ । ସେ ଦୁଷ୍ଟ ପିଲାମାନଙ୍କୁ ପୋଷା-ବିଲେଇ ପରି ଏପରି ମନେଇ ଦେଉଥିଲେ ଯେ ସେମାନେ ହରିହରଙ୍କର ଏକାନ୍ତ ଅନୁଗତ ହୋଇ ରହିଯାଉଥିଲେ ।

ମୟୂରଭଞ୍ଜ ରାଜଦରବାରରୁ ସେ ୧୯୧୨ରେ ଚାଲିଆସିଲେ ସାକ୍ଷୀଗୋପାଳ । ତତ୍‌କାଳୀନ ସ୍କୁଲ ସମୂହର ନିରୀକ୍ଷକ ମଧୁସୂଦନ ରାଓଙ୍କ ସଙ୍ଗେ ବିଦ୍ୟାଳୟ ପ୍ରତିଷ୍ଠା ନେଇ ପରାମର୍ଶ କଲେ । ଶ୍ରୀରାମଚନ୍ଦ୍ରପୁରର ମାଇନର ସ୍କୁଲକୁ ସତ୍ୟବାଦୀକୁ ଉଠାଇ ଆଣି ପୂର୍ବନିଯୁକ୍ତ ଶିକ୍ଷକମାନଙ୍କୁ ନିଯୁକ୍ତି ଦେଲେ କୌଣସି ଆପତ୍ତି ନାହିଁ ବୋଲି ନିରୀକ୍ଷକ ମହାଶୟ ପରାମର୍ଶ ଦେଲେ । କାରଣ ନୂତନ ବିଦ୍ୟାଳୟ ସ୍ଥାପନ ଓ କର୍ମକର୍ତ୍ତା ନିଯୁକ୍ତି ଏକ ସମୟ-ସାପେକ୍ଷ ବ୍ୟାପାର ଥିଲା । ପଣ୍ଡିତ ଗୋପବନ୍ଧୁ ସେତେବେଳେ ସତ୍ୟବାଦୀ ଟେମ୍ପଲ ମ୍ୟାନେଜିଂ ଟ୍ରଷ୍ଟ୍ ବୋର୍ଡ଼ର ସଭ୍ୟ ଥାନ୍ତି । ଟ୍ରଷ୍ଟ ବୋର୍ଡ଼ର ମ୍ୟାନେଜର ଥାଆନ୍ତି ମାଧବ ମିଶ୍ର । ସ୍ୱକୀୟ ବ୍ୟକ୍ତିତ୍ୱରେ ମାଧବ ମିଶ୍ର ତଥା ଅନ୍ୟାନ୍ୟ ସଭ୍ୟମାନଙ୍କୁ ପ୍ରଭାବିତ କରି ମନ୍ଦିର ପଛପଟ ବକୁଳ ଛୁରୀଅନା କୁଞ୍ଜରେ ସ୍କୁଲ ପାଇଁ ଜାଗା ପାଇଲେ ଓ ଶ୍ରୀରାମଚନ୍ଦ୍ରପୁରରେ ଚାଲୁଥିବା ମଧ-ଇଂରାଜୀ ସ୍କୁଲକୁ ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ପ୍ରଚାରକ ଅନନ୍ତ ମିଶ୍ର ପ୍ରଭୃତିଙ୍କ ସହଯୋଗରେ ସତ୍ୟବାଦୀକୁ ଉଠାଇ ଆଣିଲେ । ସ୍କୁଲର ଶିକ୍ଷକ ପଣ୍ଡିତ ଆର୍ତ୍ତତ୍ରାଣ ଦାଶ, ପଣ୍ଡିତ ମଧୁସୂଦନ ମିଶ୍ରଙ୍କୁ ନେଇ ସ୍କୁଲ ପରିଚାଳନା କଲେ । ପରେ ପରେ ପଣ୍ଡିତ ନୀଳକଣ୍ଠ କଲିକତାରୁ ଏମ୍.ଏ. ପାସ କରି ଆସି ହେଡ୍‌ମାଷ୍ଟର ହେଲେ । ହରିହର ମଧ ପ୍ୟାରୀମୋହନରୁ ଆସି ଯୋଗଦେଲେ । ପଣ୍ଡିତ ଗୋପବନ୍ଧୁଙ୍କ ଅନୁରୋଧ କ୍ରମେ ପଣ୍ଡିତ ଲିଙ୍ଗରାଜ ମିଶ୍ର, ଏମ୍.ଏ., ପଣ୍ଡିତ କୃପାସିନ୍ଧୁ ମିଶ୍ର, ଏମ୍.ଏ. ପ୍ରଭୃତି ଯୋଗଦାନ କରି ହାଇସ୍କୁଲଟିକୁ ସ୍ଥାପନ କରିବାକୁ ସକ୍ଷମ ହେଲେ । ଏମାନେ ମଣିଷଗଢ଼ା ଗୋଟିଏ କାରଖାନା ଗଢ଼ିବାରେ ଲାଗିପଡ଼ିଲେ । ଜନଗଣଙ୍କ ସେବାରେ ନିୟୋଜିତ ରହି ଦେଶର ଆହ୍ୱାନ ପ୍ରତି ସତତ ସତର୍କତା ରହିବା ହିଁ ଶିକ୍ଷାର ଚରମ ଉତ୍କର୍ଷ ସାଧନ । ତେଣୁ ଏହିପରି ସେବା ମନୋଭାବସଂପନ୍ନ ବିଜ୍ଞବ୍ୟକ୍ତି ସୃଷ୍ଟି କରିବା ଏହି ନବଗଠିତ

ଅନୁଷ୍ଠାନର ଲକ୍ଷ୍ୟ ଥିଲା । କିନ୍ତୁ ତତ୍କାଳୀନ ବ୍ରାହ୍ମଣ ସମାଜର କେତେକ ଖଳ ଯୁବକ ସ୍କୁଲ ଗୃହରେ ନିଆଁ ଲଗାଇ ପୋଡ଼ିଦେଲେ । ପଣ୍ଡିତ ଗୋପବନ୍ଧୁ ଏଥିରେ ମର୍ମାହତ ହେଲେ; ମାତ୍ର ହତୋତ୍ସାହ ହୋଇ ପଡ଼ିନଥିଲେ । ଦ୍ୱିଗୁଣ ଉତ୍ସାହରେ ଚାନ୍ଦା ସଂଗ୍ରହ କରି ପୁଣି ସ୍କୁଲଘର ଓ ଛାତ୍ରାବାସ ନିର୍ମାଣ କଲେ । ପ୍ରଚାରକ ଅନନ୍ତ ମିଶ୍ର ଗଡ଼ଜାତ ଅଞ୍ଚଳକୁ ଯାଇ ଶହ ଶହ ଟଙ୍କା ଚାନ୍ଦା ଭାବରେ ସ୍କୁଲ ପାଇଁ ସଂଗ୍ରହ କରି ଜମା କରିବାକୁ ଲାଗିଲେ । ଅନେକ ରାଜପରିବାରରୁ ପିଲାମାନେ ଆସି ଏହି ବିଦ୍ୟାଳୟରେ ନାମ ଲେଖାଇବାକୁ ଆରମ୍ଭ କଲେ । ବିଦ୍ୟାଳୟର ଆଠବଖରା ପକ୍କା ଘର ତିଆରି ହେଲା । ଧୀରେ ଧୀରେ ବିଦ୍ୟାଳୟର ଆୟତନ ବଢ଼ିଲା ଓ ଆବାସିକ ବିଦ୍ୟାଳୟରେ ପରିଣତ ହେଲା । ପ୍ରାୟ ପାଞ୍ଚଶତ ପିଲା ଛାତ୍ରାବାସରେ ରହି ପାଠ ପଢ଼ୁଥାନ୍ତି ।

ଆଚାର୍ଯ୍ୟ ହରିହର ହଷ୍ଟେଲର ଶେଷ ଭାଗରେ ଅବସ୍ଥିତ ପଣ୍ଡିତ ଗୋପବନ୍ଧୁଙ୍କର ପାଖ ଘରେ ରହୁଥାନ୍ତି । ସେ ହୋମିଓପାଥି ଅଭ୍ୟାସ କରୁଥାଆନ୍ତି । ହରିହର ଅଙ୍କ ଓ ଜ୍ୟାମିତିରେ ଥିଲେ ଧୁରୀଣ । ଶ୍ରେଣୀର ଅଙ୍କ ଶିକ୍ଷକ ସନ୍ଧ୍ୟାରେ ଛାତ୍ରାବାସ ସାରା ତନଖି କରି କାହାର ଜ୍ୱର ପାଇଁ, କାହାର ଚର୍ମଗତ ବିକାର ପାଇଁ ହୋମିଓପାଥି ଔଷଧ ବିତରଣ କରୁଥିଲେ । ତାଙ୍କ ମନରେ କୌଣସି ବିକାର ଭାବ ନଥିଲା । ପୁତ୍ରବତ୍ ଛାତ୍ରମାନଙ୍କର କାଛୁକୁଣ୍ଡିଆ ହାତରେ ଧୋଇଦେଇ ପରମ ଆତ୍ମପ୍ରସାଦ ଲାଭ କରୁଥିଲେ ହରିହର । ତେଣୁ ପ୍ରତ୍ୟେକ ଛାତ୍ର ତାଙ୍କୁ ପିତାମାତାଙ୍କଠାରୁ ଅଧିକ ଶ୍ରଦ୍ଧା କରୁଥିଲେ । କେଉଁ ପିଲା କେଉଁ ପ୍ରକୃତିର ତାହା ତାଙ୍କୁ ହିଁ ଜଣାଥିଲା । ତେଣୁ ତାହା ସଙ୍ଗେ ତଦନୁରୂପ ବ୍ୟବହାର କରି ତାକୁ ବାଟକୁ ଆଣୁଥିଲେ । ତାର ଏକ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରୁଛୁ । ସେ ତାଙ୍କ କୋଠରିରେ ବସିଛନ୍ତି ଦେଖିଲେ ଦଳେ ପିଲା ଛୁରୀଅନା ବନ ପରିବେଷ୍ଟିତ ଟ୍ରେନିଂ ଗ୍ରାଉଣ୍ଡରୁ ଖେଳ ପରେ ଫେରୁଛନ୍ତି । ସେମାନଙ୍କ ମଧ୍ୟରୁ ଜନୈକ ଛାତ୍ର ହଠାତ୍ ଏକ ଛୁରୀଅନା ଗଛରୁ ଡାଳଖଣ୍ଡେ ଭାଙ୍ଗି ମନଖୁସୀରେ ହଲାଇ ହଲାଇ ଚାଲିଲା । ଆଚାର୍ଯ୍ୟଙ୍କ ମନରେ ଭୀଷଣ ଆଘାତ ଲାଗିଲା । ପିଲାଟିର ନିଃସଙ୍କୋଚତାରେ ସେ ବିରକ୍ତ ହେଲେ । ଗୋଟିଏ ଅନ୍ୟ ଛାତ୍ରକୁ ଡାକି ସେ କହିଲେ, ‘‘ସେ ଯେଉଁ ପିଲାଟି ଡାଳ ହଲାଇ ଆସୁଛି ତାକୁ ଡାକି ଆଣ ତ ।’’ ଡାଳ ଭାଙ୍ଗି

ନିଃସଙ୍କୋଚରେ ଅଗ୍ରସର ହେଉଥିବା ଛାତ୍ରର ଗତି ସ୍ତମ୍ଭିତ ହୋଇଗଲା । ଆଚାର୍ଯ୍ୟଙ୍କ ଭୟରେ ଥରିଥରି ତା ହାତରୁ ଫୁଲଡାଳ ଖସି ପଡ଼ିଲା । ଆଚାର୍ଯ୍ୟ ସେହି ଛାତ୍ରଟିକୁ ନିକଟକୁ ଡାକିଲେ, ତା ସାଙ୍ଗମାନଙ୍କୁ ମଧ୍ୟ ଡକାଇ ସେଠାରେ ସମବେତ କରି ସମସ୍ତଙ୍କ ସମ୍ମୁଖରେ ସେହି ଛାତ୍ରର ଏକ ଆଙ୍ଗୁଠି ଧରି ଓଲଟା ମୋଡ଼ିଦେଲେ । ଯନ୍ତ୍ରଣାରେ 'ମରିଗଲି, ମରିଗଲି' ବୋଲି ଆର୍ତ୍ତଚିତ୍କାର କରି ଉଠିଲା ବାଳକଟି । ନିର୍ବିକାର ଭଙ୍ଗୀରେ ଆଚାର୍ଯ୍ୟ ଉତ୍ତର ଦେଲେ, ''ମୁଁ ଆଙ୍ଗୁଠି ଭାଙ୍ଗି ନାହିଁ, ଏତେ ଚିତ୍କାର କାହିଁକି କରୁଛ ?'' ସେ ଛାତ୍ରଟି କହିଲା, ''ଭାରି କାଟୁଛି ।'' ''ଆଚ୍ଛା, ତମେ ଯେଉଁ ଡାଳଟି ସେ ଗଛରୁ ଭାଙ୍ଗିଦେଲ ସେ ଗଛ କେତେ କାନ୍ଦୁଥିବ । ରାତିଯାକ ସେ କ'ଣ ଶୋଇ ପାରିବ ? ତୁମ ଆଙ୍ଗୁଠି ଟିକିଏ ବି ଭାଙ୍ଗିନି ତୁମେ ଏତେ କାନ୍ଦୁଛ । ସେ ଗଛର ଡାଳ ଭାଙ୍ଗି ତୁମେ କେତେ ଅପରାଧ କଲ ଅନୁଭବ କରିପାରୁଛ ?'' ସେହି ପିଲା ସେଠାରେ ପ୍ରତିଜ୍ଞା କଲା ଜୀବନରେ ସେପରି ଭୁଲର ପୁନରାବୃତ୍ତି ନକରିବା ପାଇଁ । ଅନ୍ୟ ପିଲାମାନେ ମଧ୍ୟ ଶପଥ ନେଲେ । ତାଙ୍କର ଛାତ୍ରମାନଙ୍କ ପ୍ରତି ଶ୍ରଦ୍ଧା, ସେବା ଏବଂ ସେମାନଙ୍କର ଚରିତ୍ର ପ୍ରତି ତୀକ୍ଷ୍ଣ ନଜର ଯୋଗୁଁ ପ୍ରତ୍ୟେକ ଛାତ୍ର ତାଙ୍କୁ ଅଶେଷ ସମ୍ମାନ ଦେଉଥିଲେ ।

ଛାତ୍ରମାନଙ୍କୁ ସକାଳୁ ଉଠାଇ ସମବେତ ପ୍ରାର୍ଥନା ପରେ ୧ ଘଣ୍ଟା ଶ୍ରମଦାନ କରିବାକୁ ପଡୁଥିଲା । ଶ୍ରମରେ କୁଣ୍ଠିତ ହେବା ବା ଆଳସ୍ୟ ପ୍ରଦର୍ଶନ କରିବା ଅବସ୍ଥାରେ ହରିହରଙ୍କୁ କେହି ଦେଖି ନାହାନ୍ତି । ଫାଉଡ଼ା, କୋଡ଼ି ଓ କୋଦାଳ ସାହାଯ୍ୟରେ ପିଲାମାନେ ସ୍କୁଲର ଅନତିଦୂରରେ ଏକ ପୁଷ୍କରିଣୀ ଖୋଳିଥିଲେ । ପଣ୍ଡିତ ବାସୁଦେବ ମହାପାତ୍ର ଡ୍ରିଲ୍ ସଙ୍ଗେ ଗଦା, ମୁଦ୍‌ଗର ବୁଲାଇବା, ସନ୍ତରଣ ଇତ୍ୟାଦି ପ୍ରତ୍ୟହ ଶିକ୍ଷାଦାନ କରୁଥିଲେ । ସକାଳର କାର୍ଯ୍ୟକ୍ରମ ପରେ ୧ ଘଣ୍ଟା ପଢ଼ି ୯ଟାରେ ପଙ୍‌କ୍ତି-ଭୋଜନରେ ବସି ତାପରେ ବିଦ୍ୟାଳୟକୁ ସମସ୍ତେ ଯାଉଥିଲେ । ଚଉକି ଓ ମେଜ-ବିହୀନ ଶ୍ରେଣୀରେ ଖଜୁରି ବା ତାଳପତ୍ର ଚଟେଇ ଖଣ୍ଡେ ଧରି ତଳେ ବସୁଥିଲେ । ସାମନାରେ ଖାଲି ଖଣ୍ଡେ ଲେଖାଏଁ କାଠ ଡେକ୍ସ ଉପରେ ଲେଖାପଢ଼ା ଚାଲୁଥିଲା । ଛୁରୀଅନା କୁଞ୍ଜମଧ୍ୟରେ ୧୫ ମିଟର ବ୍ୟବଧାନରେ ସିମେଣ୍ଟ ଚେୟାର ଓ ସିମେଣ୍ଟ ଟେବୁଲରେ ଶିକ୍ଷକମାନେ ବସି ଶିକ୍ଷାଦାନ କରୁଥିଲେ । ବୈଦିକ ଯୁଗର ଗୁରୁକୁଳର

ପୁନର୍ଜନ୍ମ ଘଟିଥିଲା ଯେପରି । ବିଦ୍ୟାଳୟ ଛୁଟି ପରେ ଶିକ୍ଷାର୍ଥୀମାନଙ୍କୁ ଖେଳିବା ପାଇଁ ୧ ଘଣ୍ଟା ସମୟ ଦିଆଯାଉଥିଲା । ସଂଧ୍ୟାରେ ସାକ୍ଷୀଗୋପାଳଙ୍କୁ ଦର୍ଶନ କରି ବଜାରରୁ କିଛି ଜଳଖିଆ ଖାଇ ସଂଧ୍ୟା ଛଅଟାରେ ସମବେତ ପ୍ରାର୍ଥନା ପରେ ଅଧ୍ୟୟନ ପାଇଁ ବସିଯାଉଥିଲେ । ପିଲାମାନେ ନିଷ୍ଠାପର ଭାବରେ ଅଧ୍ୟୟନରେ ମନୋନିବେଶ କରୁଛନ୍ତି କି ନାହିଁ ତାହା ନିରୀକ୍ଷଣ କରିବା ଆଚାର୍ଯ୍ୟଙ୍କର ଏକ ନିତ୍ୟକର୍ମ ହୋଇ ଯାଇଥିଲା । କୌଣସି ଛାତ୍ର ଅମନୋଯୋଗୀ ହେଲେ ସେ ତାର କାରଣ ଜିଜ୍ଞାସା କରିବା ସହ ପ୍ରତିକାର ମଧ୍ୟ କରୁଥିଲେ ।

କ୍ରମେ ଆଇ.ଏ. କ୍ଲାସ ଆରମ୍ଭ ହେଲା । ପଣ୍ଡିତ ନୀଳକଣ୍ଠ ହେଡ୍‌ମାଷ୍ଟର, ପଣ୍ଡିତ ଗୋଦାବରୀଶ ଇଂରାଜୀ, ପଣ୍ଡିତ କୃପାସିନ୍ଧୁ ଇତିହାସ ଶ୍ରେଣୀରେ ଅଧ୍ୟାପନା କରିବାକୁ ଆରମ୍ଭ କଲେ । ମହାତ୍ମାଗାନ୍ଧୀ, ସାର୍ ଆଶୁତୋଷ ମୁଖାର୍ଜୀ ପ୍ରଭୃତି ଏହି ଗୁରୁକୁଳ ଶିକ୍ଷାୟତନ ଓ ଶିକ୍ଷକମାନଙ୍କର ପାରଦର୍ଶିତା ଦେଖି ଭୂୟସୀ ପ୍ରଶଂସା କରିଯାଇଛନ୍ତି ।

ହରିହରଙ୍କର ଶିକ୍ଷକତା ଏହି ବକୁଳ ବନରେ ଶେଷହେଲେ ମଧ୍ୟ ଶିକ୍ଷାଦାନ ସୁଯୋଗ ସେ ସବୁବେଳେ ଖୋଜିଛନ୍ତି । ୧୯୩୦ରେ ହଜାରିବାଗ ଜେଲ୍ ଭିତରେ ବନ୍ଦୀମାନଙ୍କୁ ପଢ଼ାଇବାର ଦାୟିତ୍ୱ ତାଙ୍କ ଉପରେ ଥିଲା । ତାଙ୍କ ଶିକ୍ଷକ ଜୀବନରେ ସେ ଛାତ୍ରମାନଙ୍କୁ ନେଇ ମାଇଲ ମାଇଲ୍ ବାଟ ଯାଆନ୍ତି । ବାଟଯାକ ଏଭଳି ମଜାଗପ କହନ୍ତି ଯେ ସେମାନେ କ୍ଲାନ୍ତି ଅନୁଭବ କରନ୍ତି ନାହିଁ । ତାଙ୍କର ବିଶେଷତ୍ୱ ହେଉଛି ଯେ ସେ ଯେତେ ବ୍ୟଙ୍ଗ ଓ ମଉଜ କଲେ ମଧ୍ୟ କାହାକୁ ଆକ୍ଷେପ କରି ବା କାହା ମନରେ କଷ୍ଟ ଦେଇ କିଛି କହନ୍ତି ନାହିଁ ।

# ଆଚାର୍ଯ୍ୟ ଓ ରାଜନୀତି

ରାଜ୍ୟ ଶାସନ ପାଇଁ ଆବଶ୍ୟକ ଶୃଙ୍ଖଳିତ ପଦ୍ଧତି ସଂବନ୍ଧୀୟ ବିଶେଷ ଜ୍ଞାନ ଓ ସ୍ଥାନକାଳପାତ୍ରୋପଯୋଗୀ ପ୍ରୟୋଗ ହେଉଛି ରାଜନୀତି । ପ୍ରଜା ବା ଶାସିତମାନଙ୍କର ସାମୂହିକ କଲ୍ୟାଣ ଓ ସ୍ୱାର୍ଥସାଧନ ଉଦ୍ଦେଶ୍ୟରେ ରାଜନୀତିର ପରିସର ବ୍ୟାପକ ଓ ଜଟିଳ ହୋଇଥାଏ । ଭୋଟ ପାଇବା ପାଇଁ ପରଛିଦ୍ର ଅନ୍ୱେଷଣ କରିବା, ଦେଶର ପ୍ରକୃତ ସମସ୍ୟାକୁ ହୃଦୟଙ୍ଗମ ନକରି ବିରୋଧୀ ଦଳର କାର୍ଯ୍ୟକୁ ବିକୃତ ଭାବରେ ବିଶ୍ଳେଷଣ କରିବା ବା ଅନ୍ୟାୟ ଉପାୟରେ ବିପୁଳ ଅର୍ଥ ଠୁଳ କରି ସେଥିରେ ନାଗରିକମାନଙ୍କୁ ପ୍ରଲୁବ୍ଧ କରିବା ପ୍ରକୃତ ରାଜନୀତିଜ୍ଞର ଲକ୍ଷଣ ନୁହେଁ । ନିଜକୁ ସଂକୀର୍ଣ୍ଣତାର ଗଣ୍ଡି ମଧ୍ୟରୁ ଉଦ୍ଧାର କରି ସାମୂହିକ ଉନ୍ନତି ଓ ପ୍ରଗତି ନିମିତ୍ତ ଜୀବନକୁ ଉତ୍ସର୍ଗୀକୃତ କରିବା ହେଉଛି ପ୍ରତ୍ୟେକ ରାଜନୀତିଜ୍ଞଙ୍କର ପ୍ରକୃତ ଲକ୍ଷଣ । ରାଜନୀତି ହିଂସା, ଈର୍ଷା, ଛିଦ୍ର ଅନ୍ୱେଷଣ, ଛଳନା ମଧ୍ୟରେ ଦିଗହରା ହୋଇପଡ଼ିଛି ।

ଆଜିର ଦୁନିଆରେ ଯେଉଁମାନେ ନିଜକୁ ଅଯୋଗ୍ୟ, ବେକାର ଓ ଅସହାୟ ମନେ କରୁଛନ୍ତି ସେମାନେ ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରୁଛନ୍ତି । ଚାଣକ୍ୟଙ୍କ ପରି ରାଜନୀତିଜ୍ଞମାନଙ୍କର ଘୋର ଅଭାବ ଆଜିକାଲି ପରିଲକ୍ଷିତ ହେଉଛି । କିନ୍ତୁ ହରିହରଙ୍କ ପରି ନୀରବ ରାଜନୀତିଜ୍ଞ ଏକ ଅନନ୍ୟ ଦୃଷ୍ଟାନ୍ତ । ରାଜନୀତି ସହ ସେ ଦୀର୍ଘଦିନ ଧରି ଜଡ଼ିତ ଥିଲେ । ତାଙ୍କର ଶିକ୍ଷକତା, ସେବା ମନୋଭାବ, ରାଜନୀତି ପ୍ରଭୃତି ମୃତ୍ୟୁ ପର୍ଯ୍ୟନ୍ତ ସଂଘର୍ଷମୁଖୀ ଥିଲା ।

୧୯୨୧ରେ ଗାନ୍ଧିଜୀ ଓଡ଼ିଶା ଭ୍ରମଣରେ ଆସି ପଣ୍ଡିତ ଗୋପବନ୍ଧୁଙ୍କୁ ଭାରତୀୟ ଜାତୀୟ କଂଗ୍ରେସର ଆହ୍ୱାନ ପ୍ରତି ସଚେତନ କରାଇ ଇଂରେଜ ସରକାର ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନ ଓ ବିଦେଶୀ ଦ୍ରବ୍ୟ ବର୍ଜନ ପାଇଁ ଆନ୍ଦୋଳନର ଦାୟିତ୍ୱ ଅର୍ପଣ କଲେ । ଗାନ୍ଧୀଙ୍କର ସମ୍ମୋହନରେ ପଣ୍ଡିତ ଗୋପବନ୍ଧୁଙ୍କର ଆଦର୍ଶ

ଶିକ୍ଷାୟତନ ଅନିର୍ଦ୍ଦିଷ୍ଟ କାଳ ପାଇଁ ସଂଗ୍ରାମୀ ଶିବିରରେ ପରିଣତ ହେଲା । ଗୋପବନ୍ଧୁ ତାଙ୍କର ସହକର୍ମୀମାନଙ୍କୁ ନେଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାକୁ ଅଗ୍ରସର ହେଲେ । ଆନ୍ଦୋଳନ କ୍ରମେ ଚାରିଆଡ଼େ ବ୍ୟାପିଗଲା । ଘରେ ଘରେ ଅରଟର ନାଦ ଶୁଭିଲା । ପଣ୍ଡିତ ଗୋପବନ୍ଧୁ, ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ପ୍ରଚାରକ ଅନନ୍ତ ମିଶ୍ର, ପଣ୍ଡିତ ଲିଙ୍ଗରାଜ ମିଶ୍ର ପ୍ରଭୃତି ଅସହଯୋଗ ଆନ୍ଦୋଳନରେ ଅଗ୍ରଣୀ ହୋଇ କାରାବରଣ କରିବାକୁ ଲାଗିଲେ । ଲାଠି, ବନ୍ଧୁକ ଗୁଳିରେ ବହୁ ଧନଜୀବନ ନଷ୍ଟଭ୍ରଷ୍ଟ ହେଲା । ଗ୍ରାମେଗ୍ରାମେ ସ୍କୁଲଛାତ୍ରମାନେ ଅରଟରେ ସୂତା କାଟି ଖଦୀବସ୍ତ୍ର ପରିଧାନ ପାଇଁ ପ୍ରବର୍ତ୍ତାଇବା ସଙ୍ଗେ ସଙ୍ଗେ ଗଦା ଗଦା ବିଲାତି ଲୁଗା ସଂଗ୍ରହ କରି ଅଗ୍ନି ସଂଯୋଗ କଲେ । ଜାତୀୟ ତ୍ରିରଙ୍ଗା ପତାକା ଫରଫର ହୋଇ ଉଡ଼ିବାକୁ ଲାଗିଲା । ସ୍ୱାଧୀନତା ଓ ସ୍ୱରାଜର ଦାବିରେ ଅତିଷ୍ଠ ହୋଇ ଇଂରେଜ ସରକାର ଅତି ଦୃଢ଼ତାର ସହ ଦମନ କରିଚାଲିଲେ ଆନ୍ଦୋଳନ । ନୃଶଂସତାର ସୀମା ରହିଲା ନାହିଁ । ଗୋପବନ୍ଧୁ ଅସହଯୋଗ ଆନ୍ଦୋଳନରେ ଅଂଶଗ୍ରହଣ କରିବାରୁ ଏହି ବିଦ୍ୟାଳୟ ଉପରେ ସରକାରଙ୍କ ବିଷଦୃଷ୍ଟି ପଡ଼ିଲା ଓ ଏହା କ୍ରମେ ବନ୍ଦ ହୋଇଗଲା । ହରିହରଙ୍କ ଶିକ୍ଷକ ଜୀବନର ପରିସମାପ୍ତି ଏହିଠାରେ ଆନୁଷ୍ଠାନିକ ଭାବରେ ଘଟିଥିଲେ ମଧ୍ୟ ବାସ୍ତବ ଅର୍ଥରେ ତାହା ସମାପ୍ତ ହୋଇ ନଥିଲା । ଏହାପରେ ସେ ଶିକ୍ଷକତା କରିବାର ସୁଯୋଗ ଖୋଜିଛନ୍ତି । ସୁଯୋଗ ପାଇଛନ୍ତି ମଧ୍ୟ । ଅସହଯୋଗ ଆନ୍ଦୋଳନ ବେଶୀଦିନ ତିଷ୍ଠି ପାରିନଥିଲା । ସରକାର ନେତାମାନଙ୍କୁ ବନ୍ଦୀ କରି ଲୋକଙ୍କୁ ଭୟଭୀତ କରି ଆନ୍ଦୋଳନକୁ ଦବାଇ ଦେଲେ । କିନ୍ତୁ ଲୋକଙ୍କ ଭିତରେ କ୍ରମ-ବିକଶିତ ଘୃଣାଭାବକୁ ଦମନ କରିପାରିଲେ ନାହିଁ । ଗାନ୍ଧୀଙ୍କର ଆଣ୍ଠୁ ନଲୁଚା ଲୁଗାପିନ୍ଧା ଓ ଫୁଙ୍ଗୁଳା ଦେହକୁ ଦେଖି ହରିହର ଅଭିଭୂତ ହୋଇପଡ଼ିଲେ । ନିଜ ହାତରେ ସୂତାକାଟି ବୁଣିଥିବା ଲୁଗା ଖଣ୍ଡିକରେ ପରମତୃପ୍ତି ଅନୁଭବ କରୁଥିଲେ । ୧୯୩୦ରେ ହଜାରିବାଗ ଜେଲ୍‌ରେ ଭର୍ତ୍ତି ହେବା ହରିହରଙ୍କ ପାଇଁ ପରମ ସୁଯୋଗ ଥିଲା । ଏଠାରେ ସେ ଶ୍ରୀମଦ୍ ଭାଗବତ ଗୀତାର ଅଧ୍ୟୟନ ଓ ବିଶ୍ଳେଷଣ କରିଥିଲେ । ଏତିକିରେ ସରି ନଥିଲା ତାଙ୍କର ବନ୍ଦୀ ଜୀବନର ଇତିହାସ । 'ଭାରତଛାଡ଼' ଆନ୍ଦୋଳନରେ ଯୋଗଦେଇ ସେ ୧୯୪୨ ଅଗଷ୍ଟ ମାସରେ ବ୍ରହ୍ମପୁର ଜେଲ୍‌ରେ ଅଟକବନ୍ଦୀ ହୋଇଥିଲେ । ଏଥିରେ ସେ ଦୀର୍ଘ ଦୁଇବର୍ଷ କାଳ ଅତିବାହିତ କରିଥିଲେ ।

ଇଂରେଜମାନେ ପ୍ରତ୍ୟକ୍ଷ ଭାବରେ ଶାସନଦ୍ୱାରା କେବଳ ଭାରତୀୟମାନଙ୍କର ଦୃଢ଼ତା ଦମନ କରିନଥିଲେ, ସେମାନଙ୍କର ନୈତିକ ଅଧୋପତନ ଘଟାଇ ଭାରତୀୟ ଯୁବପିଢ଼ିକୁ ସଂପୂର୍ଣ୍ଣ ଅକାମୀ କରିଦେବାକୁ ବସିଥିଲେ । ମଦ, ଗଞ୍ଜେଇ, ଅଫିମ ନିଶାରେ ଯୁବଗୋଷ୍ଠୀକୁ ସଂପୂର୍ଣ୍ଣ ନିଷ୍କ୍ରିୟ କରିଦେବା ସଙ୍ଗେ ସଙ୍ଗେ ପ୍ରଚୁର ଆୟକରି ଇଂରେଜ ରାଜକୋଷ ପୂର୍ଣ୍ଣ କରିବା ଥିଲା ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଏଥିପାଇଁ କୌଣସି ଅବକାରୀ କଟକଣା ନଥିଲା । ତେଣୁ ୧୯୩୦ରେ ଯେତେବେଳେ ଅସହଯୋଗ ଆନ୍ଦୋଳନ ନିଷ୍ପତ୍ତି ନିଆଗଲା ସେଥିରେ ଲବଣ ସତ୍ୟାଗ୍ରହ ଓ ନିଶା ନିବାରଣ ଉପରେ ଗୁରୁତ୍ୱ ଦିଆଯାଇଥିଲା । ଅପ୍ରେଲ ୬, ୧୯୩୦ ମସିହାରେ ଗାନ୍ଧିଜୀ ସାବରମତୀ ଆଶ୍ରମରୁ ଗୁଜୁରାଟର ଦାଣ୍ଡୀକୁ ସତ୍ୟାଗ୍ରହୀମାନଙ୍କସହ ଯାତ୍ରା ଆରମ୍ଭ କଲେ । ସେହିଦିନ ସମସ୍ତ ସମୁଦ୍ର ତଟବର୍ତ୍ତୀ ସ୍ଥାନମାନଙ୍କରେ ଲୁଣ ମାରିବା ଆରମ୍ଭ ହେଲା ।

ଆମ ଓଡ଼ିଶାରେ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ିଠାରେ ଲୁଣମରା ପାଇଁ ସ୍ଥିର କରି ପ୍ରତ୍ୟେକ ଜିଲ୍ଲାରୁ ସତ୍ୟାଗ୍ରହୀ ଦଳଦଳ ହୋଇ ଯାତ୍ରା ଆରମ୍ଭ କଲେ । ପଥପ୍ରାନ୍ତ ସଭା କରି ଲୋକଶକ୍ତିକୁ ଜାଗ୍ରତ କରାଗଲା । ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ହରେକୃଷ୍ଣ ମହତାବଙ୍କର ନିର୍ଦ୍ଦେଶରେ ଦଳ ଦଳ ସତ୍ୟାଗ୍ରହୀ ଚାଲିଲେ ବାଲେଶ୍ୱରର ଇଞ୍ଚୁଡ଼ି ଲବଣ କ୍ଷେତ୍ରକୁ । ପୁରୀରେ ଶ୍ରୀ ଜଗନ୍ନାଥ ବାହିନୀର ଏକଶତ ସତ୍ୟାଗ୍ରହୀ ଆଚାର୍ଯ୍ୟ ହରିହରଙ୍କ ନେତୃତ୍ୱରେ ଚାଲିଲେ ନିମାପଡ଼ା, କାକଟପୁର, ଭଗତସିଂପୁର ଦେଇ ସ୍ୱରାଜ ଆଶ୍ରମକୁ । ଗୋପବାବୁଙ୍କ ନିର୍ଦ୍ଦେଶକ୍ରମେ ପ୍ରତ୍ୟେକ ଗଞ୍ଜେଇ, ଅଫିମ ଓ ମଦ ଦୋକାନରେ ସତ୍ୟାଗ୍ରହୀମାନେ ଲୋକଙ୍କୁ ହାତଯୋଡ଼ି, ପାଦଧରି ନିଶାସକ୍ତ ନହେବା ପାଇଁ ବାରଣ କଲେ । ଅନ୍ୟ ଗୋଟିଏ ମକଦ୍ଦମାରେ ୱାରେଣ୍ଟ ଥିବାରୁ ଚୌଧୁରୀଙ୍କୁ ଅଧବାଟରୁ ଗିରଫ କରି ନିଆଗଲା । ଆଚାର୍ଯ୍ୟ ହରିହର ଇଞ୍ଚୁଡ଼ି ଅଭିମୁଖେ ଯାତ୍ରା କଲେ ।

ସରକାରୀ ପୁଲିସମାନେ ପ୍ରତ୍ୟେକ ଅବକାରୀ ଦୋକାନମାନଙ୍କରେ ସତ୍ୟାଗ୍ରହୀମାନଙ୍କୁ ବନ୍ଦୀ କରି ଜେଲ୍‌କୁ ପଠାଇଲେ ଓ ଲବଣ ଆଇନ୍ ଭଙ୍ଗ ଅଭିଯୋଗରେ ଲବଣକ୍ଷେତ୍ରରୁ ଲୁଣପାଣି ହାଣ୍ଡି ଭାଙ୍ଗି ସତ୍ୟାଗ୍ରହୀମାନଙ୍କୁ ଦଳ ଦଳ

କରି ବନ୍ଦୀ କଲେ । ଆଚାର୍ଯ୍ୟ ମହାଶୟଙ୍କର ସେନାପତିତ୍ୱରେ ଜଗନ୍ନାଥ ସତ୍ୟାଗ୍ରହୀ ବାହିନୀ ଯିବାପରେ ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ପରେ ପଣ୍ଡିତ ରଘୁନାଥ ମିଶ୍ରଙ୍କ ଅଧିନାୟକତ୍ୱରେ ଶହଶହ ସତ୍ୟାଗ୍ରହୀ ଲବଣ ସତ୍ୟାଗ୍ରହ ପାଇଁ କଟକ ଓ ସେଠାରୁ ବାଲେଶ୍ୱର ଇଞ୍ଚୁଡ଼ି ଲବଣ କ୍ଷେତ୍ରକୁ ଚାଲିଲେ । କ୍ରମଶଃ ଆନ୍ଦୋଳନ ସର୍ବତ୍ର ବ୍ୟାପକ ଭାବରେ ଚାଲିଲା ଓ ଦଳ ଦଳ ହୋଇ ସତ୍ୟାଗ୍ରହୀ କାରାବରଣ କଲେ ।

ସେତେବେଳେ ଆମର ଓଡ଼ିଶା ଓ ବିହାର ଗୋଟିଏ ପ୍ରଦେଶ ଥିଲା ଓ ଆମର ରାଜଧାନୀ ପାଟନାଠାରେ ଥିଲା । ତେଣୁ ବିହାର-ଓଡ଼ିଶାରେ ଅସହଯୋଗ ଆନ୍ଦୋଳନର ବ୍ୟାପକତା ହେତୁ ସମସ୍ତ ଜେଲ ଭରପୂର ହୋଇଗଲା । ବାଧ୍ୟହୋଇ ସରକାର ପାଟନା ନିକଟସ୍ଥ ଦାନାପୁର ନିକଟରେ ଏକ କ୍ୟାମ୍ପ ଜେଲ୍ (ଟିଣଘର, ଚାରିପଟେ ତାରବାଡ଼) ପ୍ରତିଷ୍ଠା କଲେ । ନେତୃବୃନ୍ଦମାନଙ୍କୁ ହଜାରିବାଗ୍, ବିହାର ଜେଲଖାନାରେ ରଖାଗଲା । ମହାତ୍ମାଗାନ୍ଧୀ, ନେହେରୁ, ପଟେଲ, ଆଜାଦ ପ୍ରଭୃତିଙ୍କଠାରୁ ଆରମ୍ଭ କରି ସାଧାରଣ ସତ୍ୟାଗ୍ରହୀ ପର୍ଯ୍ୟନ୍ତ ପ୍ରାୟ ୪ ଲକ୍ଷରୁ ୬ ଲକ୍ଷ ସତ୍ୟାଗ୍ରହୀ ଜେଲଖାନାରେ ବନ୍ଦୀ ହେଲେ । ଏତେ ସଂଖ୍ୟକ ସତ୍ୟାଗ୍ରହୀମାନଙ୍କୁ ଅଟକ ରଖି ନିୟନ୍ତ୍ରଣ କରିବା ଏକ ଦୁଃସାଧ୍ୟ ବ୍ୟାପାର ଥିଲା । ଶେଷରେ ୧୯୩୧ର ପ୍ରଥମ ଭାଗରେ ବିଲାତରେ ଗୋଲଟେବୁଲ ବୈଠକ ବସିଲା । ମହାତ୍ମାଗାନ୍ଧୀ, ଜବାହରଲାଲ ନେହେରୁ, ବଲ୍ଲଭଭାଇ ପଟେଲ, ମଦନ ମୋହନ ମାଲବ୍ୟ, ସରୋଜିନୀ ନାଇଡୁ ପ୍ରଭୃତି ପ୍ରତିନିଧି ହିସାବରେ ବିଲାତ ଗଲେ । ଇଂରେଜ ସରକାର କେତେକ ଦାବି ମାନିନେଲେ ଓ ଲୋକ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା ପ୍ରଚଳନ କରିବା ପାଇଁ ପ୍ରତିଶ୍ରୁତି ଦେଲେ । ଭାରତର ତତ୍କାଳୀନ ବଡ଼ଲାଟ୍ ଇର୍‌ୱଇନ୍ ଓ ଗାନ୍ଧିଜୀ ଚୁକ୍ତିରେ ହସ୍ତାକ୍ଷର କଲେ । ଆନ୍ଦୋଳନ ସ୍ଥଗିତ ହେଲା ଓ ସମସ୍ତ ରାଜନୈତିକ ବନ୍ଦୀ ଜେଲମାନଙ୍କରୁ ଖଲାସ ହୋଇ ଗୃହାଭିମୁଖୀ ହେଲେ ।

ଓଡ଼ିଶାରେ ଭାରତୀୟ ଜାତୀୟ କଂଗ୍ରେସର ୪୬ତମ ଅଧିବେଶନ ହେବା ସ୍ଥିର ହୋଇଥିଲା ୧୯୩୨ ଜାନୁଆରୀ ମାସରେ । ପୁରୀ ସମୁଦ୍ରକୂଳ ବଳିଆପଣ୍ଡାରେ କଂଗ୍ରେସ ପାଇଁ ଗୋପବନ୍ଧୁ-ନଗର ପ୍ରତିଷ୍ଠା କରିବା କାର୍ଯ୍ୟ ଆରମ୍ଭ ହୋଇଗଲା । ଅଭ୍ୟର୍ଥନା ସମିତି ସଭାପତି ଭାବରେ ପଣ୍ଡିତ ନୀଳକଣ୍ଠ ଦାସ ନିର୍ବାଚିତ ହେଲେ ।

ସଂପାଦକ ଭାବରେ ଗୋପବନ୍ଧୁ ଚୌଧୁରୀ, କୋଷାଧ୍ୟକ୍ଷ ଭାବରେ ପୁରୀର ଜମିଦାର ଜଗନ୍ନାଥ ମିଶ୍ର ନିର୍ବାଚିତ ହୋଇ ପ୍ରସ୍ତୁତ ରହିଲେ । ଅଧିବେଶନ ପରିଚାଳନା ପାଇଁ ତିନି ହଜାର ସ୍ୱେଚ୍ଛାସେବକ ଓ ସେବିକା ବିଭିନ୍ନ ସ୍ଥାନରେ ଟ୍ରେନିଂ ପାଇଁ ଆସିଲେ । ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ସ୍ୱେଚ୍ଛାସେବିକାମାନଙ୍କ ପାଇଁ ପୁରୁଲିଆରୁ ସୁଶୀଳା ରାୟ ଓ ଉର୍ମିଳା ଚାଟାର୍ଜୀ ନେତୃତ୍ୱ ନେଇ ଥାଆନ୍ତି । ସେମାନଙ୍କ ନିର୍ଦ୍ଦେଶରେ ଛୁରା ଖେଳ ଓ ଡ୍ରିଲ ପରିଚାଳିତ ହେଉଥାଏ । ପୁରୀ ବଡ଼ଦାଣ୍ଡର ଏମାର ମଠ ନିକଟରେ ଅଭ୍ୟର୍ଥନା କମିଟି କାର୍ଯ୍ୟାଳୟ ଥାଏ । ଅଭ୍ୟର୍ଥନା ସମିତି ସଭ୍ୟଚାନ୍ଦା ଟ୨୫-୦୦ ରଖାଯାଇଥାଏ । ପଣ୍ଡିତ ଲିଙ୍ଗରାଜ ମିଶ୍ର, ପ୍ରଚାରକ ଅନନ୍ତ ମିଶ୍ର, ଆଚାର୍ଯ୍ୟ ହରିହର ପ୍ରମୁଖ ନେତୃବୃନ୍ଦ କଲିକତା, ଟାଟାନଗର ପ୍ରଭୃତି ବୁଲି ବୁଲି ଅଭ୍ୟର୍ଥନା ସମିତି ସଭ୍ୟଚାନ୍ଦା ସଂଗ୍ରହ କରିବାରେ ଲାଗି ପଡ଼ିଥାଆନ୍ତି । ବଳିଆପଣ୍ଡା ବାଲିରେ ବିରାଟ କଂଗ୍ରେସ୍ ନଗର ପ୍ରତିଷ୍ଠା ପ୍ରାୟ ଶେଷ ପର୍ଯ୍ୟାୟରେ ପହଞ୍ଚିଲାବେଳକୁ ଗାନ୍ଧୀ-ଇରଉଇନ୍ ଚୁକ୍ତିକୁ ଅସ୍ୱୀକାର କରି ଇଂରେଜ ସରକାର କଂଗ୍ରେସକୁ ପୁଣି ବେଆଇନ ଘୋଷଣା କଲେ । କ୍ଷିପ୍ର ବେଗରେ ଏହି ବାର୍ତ୍ତା ଦେଶରେ ଚହଳ ପକାଇଦେଲା । ପୁରୀ କଂଗ୍ରେସ ଅଧିବେଶନ ବାତିଲ ହୋଇଗଲା । ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚରେ ଯେଉଁ କଂଗ୍ରେସ ନଗର ପ୍ରତିଷ୍ଠା କରାଯାଉଥିଲା ତାକୁ ସଙ୍ଗେ ସଙ୍ଗେ ନିଲାମ କରି ଦିଆଗଲା । ତତ୍କାଳୀନ ପୁରୀ ଜିଲ୍ଲାପାଳ ଅଡ଼ାନି ସାହେବ ପଣ୍ଡିତ ନୀଳକଣ୍ଠଙ୍କ ଅନୁରୋଧ କ୍ରମେ ସମସ୍ତ ଆସବାପତ୍ର ନିଲାମ କରିବା ଓ ଅଭ୍ୟର୍ଥନା ସମିତିର କାଗଜପତ୍ର ସ୍ଥାନାନ୍ତର ପାଇଁ ମାତ୍ର ୨୪ ଘଣ୍ଟା ସମୟ ଦେଲେ । କଂଗ୍ରେସ ନଗରକୁ ମାତ୍ର ଟ୫୦,୦୦୦ରେ ମଙ୍ଗୁ ମଠ ମହନ୍ତ ପ୍ରହରାଜ ନିଲାମ ଧରିଲେ । ଅଭ୍ୟର୍ଥନା ଅଫିସ୍‌ରୁ କାଗଜପତ୍ର ଓ ଆସବାବପତ୍ର କୋଷାଧ୍ୟକ୍ଷ ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ମାର୍କଣ୍ଡେଶ୍ୱର ସାହିର ବାସଭବନକୁ ସ୍ଥାନାନ୍ତରଂ କରାଗଲା । ରାତି ୧୨ଟା ସୁଦ୍ଧା ସମସ୍ତ ଖାଲି ହେବା ପରେ ସମସ୍ତେ ରାମଚଣ୍ଡି ସାହି ଆଶ୍ରମକୁ ଚାଲିଗଲେ । ଓଡ଼ିଶାରେ ଆଉ କଂଗ୍ରେସ ଅଧିବେଶନ ହୋଇ ପାରିନଥିଲା ।

ପରେ ଭାରତ ସରକାର ପ୍ରାଦେଶିକ ବିଧାନସଭା ଓ କେନ୍ଦ୍ରୀୟ ସଂସଦରେ ସାବାଳକ ଭୋଟ ଜରିଆରେ (୨୧ବର୍ଷରୁ ଊର୍ଦ୍ଧ୍ୱ) ନିର୍ବାଚିତ ସଭ୍ୟମାନଙ୍କ ଦ୍ୱାରା ଶାସନ

କାର୍ଯ୍ୟ ଚଳାଇବା ପାଇଁ ସୁବିଧା ଦେଲେ । ରାଜ୍ୟ ଆସେମ୍ଲି ଓ ପାର୍ଲାମେଣ୍ଟ ପାଇଁ ନିର୍ବାଚନ ଚାଲିଲା । ନେତୃବୃନ୍ଦ ସେଥିରେ ଭାଗନେଇ ଶାସନ କ୍ଷମତାକୁ ଆସିଲେ । କିନ୍ତୁ ପ୍ରକୃତ ଗାନ୍ଧିବାଦୀ ନେତାମାନେ ନିର୍ବାଚନରେ ସାମିଲ ନହୋଇ, ସରକାରଙ୍କ ସହ ପ୍ରତ୍ୟକ୍ଷ ଭାବରେ କାର୍ଯ୍ୟ ନକରି, ସମସ୍ତ ପଦପଦବୀର ଲାଳସା ପରିତ୍ୟାଗ କରି ଦେଶର ଗଠନମୂଳକ କାର୍ଯ୍ୟରେ ନିୟୋଜିତ ହେବାକୁ ସଂକଳ୍ପ କଲେ । ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ, ଗୁଣନିଧି ମହାନ୍ତି, ରମା ଦେବୀ, ମାଳତୀ ଚୌଧୁରୀ ପ୍ରମୁଖ ପ୍ରକୃତ ଗାନ୍ଧିବାଦୀ ନେତା ପଦପଦବୀ ଗ୍ରହଣ ନକରି ଦରିଦ୍ର ନାରାୟଣ ସେବାରେ ନିଜକୁ ଉତ୍ସର୍ଗ କଲେ । କଂଗ୍ରେସରୁ କେତେକ ଅସନ୍ତୁଷ୍ଟ ଗୋଷ୍ଠୀ ପୃଥକ୍ ହୋଇ ସୋସିଆଲିଷ୍ଟ ପାର୍ଟି ଓ କମ୍ୟୁନିଷ୍ଟ ପାର୍ଟି ଗଠନ କରି କଂଗ୍ରେସଦଳ ଶାସନରେ ରହିବାବେଳେ ତାର ଦୋଷତ୍ରୁଟି ଅନ୍ୱେଷଣ କରି ପ୍ରକାଶ କରିବାକୁ ଲାଗିଲେ । ଓଡ଼ିଶାରେ ମଧ୍ୟ ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀ ଓ ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ସୋସିଆଲିଷ୍ଟ ପାର୍ଟି ଓ କମ୍ୟୁନିଷ୍ଟ ପାର୍ଟିର ଅଭ୍ୟୁଦୟ ହେଲା । ଭାରତ ସରକାରଙ୍କ ସଙ୍ଗେ ଶାସନ କ୍ଷେତ୍ରରେ ସହଯୋଗ କରି କଂଗ୍ରେସ ନେତାମାନେ ପଦପଦବୀ ଅଧିକାର କଲେ । ଗାନ୍ଧିଜୀ କିନ୍ତୁ ଶାସନ କ୍ଷମତାରେ ଥିବା ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ସେମାନଙ୍କର ଦୋଷତ୍ରୁଟି ଦେଖାଇବା ସଙ୍ଗେ ସଙ୍ଗେ ସ୍ୱୟଂ ଦଳିତ ସମାଜ, ହରିଜନ ଓ ଆଦିବାସୀ କଲ୍ୟାଣରେ ଲାଗିପଡ଼ିଲେ । ଆଚାର୍ଯ୍ୟ ହରିହର ଓ ଗୋପବନ୍ଧୁ ପ୍ରଭୃତି ଗାନ୍ଧୀବାଦୀ ଆଦର୍ଶରେ ବେଶ୍ ପ୍ରଭାବିତ ହୋଇ ତଦନୁଯାୟୀ କାର୍ଯ୍ୟପନ୍ଥା ସ୍ଥିର କରିଥିଲେ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନେଇ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ପ୍ରଭୃତି ଯେଉଁ ସ୍ୱପ୍ନ ଦେଖି ଜୀବନ ଉତ୍ସର୍ଗ କରିଥିଲେ ତାକୁ ବହୁ ଝଡ଼ଝଞ୍ଜା ମଧ୍ୟରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେଓ, ପଣ୍ଡିତ ଗୋଦାବରୀଶ, ପଣ୍ଡିତ ନୀଳକଣ୍ଠ ଦାସ, ବ୍ରଜସୁନ୍ଦର ଦାଶ ପ୍ରଭୃତି ଚରିତାର୍ଥ କଲେ ୧୯୩୬ ମସିହା ଅପ୍ରେଲ ମାସରେ । ବିହାର ଓ ମଧ୍ୟପ୍ରଦେଶରୁ ପୃଥକ୍ ହୋଇ ଆମେ ଆମର ସ୍ୱତନ୍ତ୍ର ଓଡ଼ିଶା ଲାଭ କଲୁ । କିନ୍ତୁ ମଧୁବାବୁ, ଗୋପବନ୍ଧୁଙ୍କର କଳ୍ପିତ

ଓଡ଼ିଶା ପ୍ରଦେଶ ସ୍ୱପ୍ନରେ ହିଁ ରହିଗଲା । ଛିନ୍ନମସ୍ତା ପଙ୍ଗୁ ଜନନୀଟିଏ ଲାଭ କରି କେତେ ମାତୃଭକ୍ତ ଦେଶପ୍ରେମୀଙ୍କର ପ୍ରାଣ ବ୍ୟାକୁଳ ହେଉଥିବ ତାହା ସହଜରେ କଳ୍ପନା କରି ହେବ ନାହିଁ । ପଣ୍ଡିତ ଗୋଦାବରୀଶ ସିଂହଭୂମ ଚକ୍ରଧରପୁର ଓଡ଼ିଆ ହାଇସ୍କୁଲରେ ହେଡ୍‌ମାଷ୍ଟର ଥାଇ ଓ ପ୍ରଚାରକ ଅନନ୍ତ ମିଶ୍ର ଚକ୍ରଧରପୁରରେ ଓଡ଼ିଆ ଭାଷା ପ୍ରଚାର ପାଇଁ ପ୍ରେସ୍ ସ୍ଥାପନ କରି ଉତ୍କଳ ସମ୍ମିଳନୀ ପତ୍ରିକା ପ୍ରକାଶ କରି ଯେଉଁ ଚେତନା ସୃଷ୍ଟି କରିଥିଲେ ସେହି ସିଂହଭୂମ କିନ୍ତୁ ଓଡ଼ିଶା ବାହାରେ ରହିଗଲା । ଗଞ୍ଜାମ ଜିଲ୍ଲାର ମଞ୍ଜୁଷା ଚରଣ ପ୍ରଭୃତି, ସମ୍ବଲପୁରର ବସ୍ତର ଅଂଶ ବିଚ୍ଛିନ୍ନ ହୋଇ ଏକ ଅସଂପୂର୍ଣ୍ଣ ପ୍ରଦେଶ ଆମକୁ ମିଳିଲା । କଂଗ୍ରେସ ସରକାର ଗଠନ ହେଲାବେଳେ ପ୍ରଥମ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାଶ ହେଲେ । ତାପରେ ପାରଳା ମହାରାଜାଙ୍କର ପ୍ରଧାନମନ୍ତ୍ରିତ୍ୱରେ ଯେଉଁ ସରକାର ଗଠିତ ହେଲା ସେତେବେଳେ ପଣ୍ଡିତ ଗୋଦାବରୀଶ ମିଶ୍ର ଶିକ୍ଷା ମନ୍ତ୍ରୀ ଥାଇ ନୂତନ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ କଲେ ।

ଅନ୍ୟ ପକ୍ଷରେ ଆଚାର୍ଯ୍ୟ ହରିହର ଦାସ, ଗୋପବନ୍ଧୁ ଚୌଧୁରୀ, ଗୁଣନିଧି ମହାନ୍ତି, ରମା ଦେବୀ, ମାଳତୀ ଚୌଧୁରୀ ବିନୋବାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ସର୍ବୋଦୟ ସଂଘ ଗଠନ କରି ଜନସାଧାରଣଙ୍କ ସେବାରେ ବ୍ରତୀ ହେଲେ । ଭୂଦାନ ଆନ୍ଦୋଳନ ପ୍ରବର୍ତ୍ତକ ବିନୋବାଜୀ ସାରାଦେଶ ପଦବ୍ରଜରେ ବୁଲି ବୁଲି ବଡ଼ ବଡ଼ ଜମିଦାରଙ୍କୁ ପ୍ରବର୍ତ୍ତାଇ ଭୂମି ଓ ଗ୍ରାମ ଭିକ୍ଷା କରିବାକୁ ଲାଗିଲେ । ଓଡ଼ିଶାରେ ବିନୋବାଜୀ ପଦବ୍ରଜରେ ବୁଲି ବୁଲି ବହୁ ଭୂମି ଓ ଗ୍ରାମ ଦାନସ୍ୱରୂପ ସଂଗ୍ରହ କରି ଭୂମିହୀନ ଲୋକମାନଙ୍କୁ ଦାନ କରିଛନ୍ତି । ଆଚାର୍ଯ୍ୟ ହରିହର ୧୯୫୮ରୁ ୧୯୬୦ ପର୍ଯ୍ୟନ୍ତ ବୁଲି ବହୁ ଜମି ସଂଗ୍ରହ କରି ଭୂମିହୀନମାନଙ୍କ ମଧ୍ୟରେ ବଣ୍ଟନ କରିଥିଲେ ।

ପୁରୀ ରେଳଷ୍ଟେସନ ନିକଟ ତାଳବଣିଆରେ ସର୍ବୋଦୟ ନଗରରେ ବିନୋବାଜୀଙ୍କ ନେତୃତ୍ୱକ୍ରମେ ସାରା ଭାରତର ସର୍ବୋଦୟ କର୍ମୀ ସମାବିଷ୍ଟ ହୋଇ ଭୂଦାନ ଆନ୍ଦୋଳନ ଯଜ୍ଞପାଇଁ ସମିଧ ସଂଗ୍ରହ କରିଥିଲେ । କଟକରେ ଥୋରିଆ ସାହିରେ ସର୍ବୋଦୟ ନେତା ଗୁଣନିଧି ମହାନ୍ତିଙ୍କ ନାମରେ ନାମିତ ଗୁଣନିଧିଭବନ ସର୍ବୋଦୟ କର୍ମୀମାନଙ୍କର ପ୍ରଧାନ ପୀଠସ୍ଥଳୀ ଭାବରେ ବିବେଚିତ । ଏହି ଭବନରେ ହିଁ ଆଚାର୍ଯ୍ୟ ହରିହରଙ୍କୁ ଶେଷ ଜୀବନ ଅତିବାହିତ କରିବାକୁ ପଡ଼ିଥିଲା । ୧୯୨୧ରୁ

ଦୀର୍ଘ ପଚିଶବର୍ଷର ସ୍ୱାଧୀନତା ସଂଗ୍ରାମ ଭିତରେ ଆଚାର୍ଯ୍ୟ ହରିହର ଥିଲେ ଓଡ଼ିଶା ପାଇଁ ଭୀଷ୍ମଦେବ । ଇଂରେଜ ସରକାର ସହ ଲଢ଼େଇ ଚାଲିଥିବାବେଳେ ହରିହର ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଦୁଇଦୁଇଥର ସଭାପତି ହୋଇଛନ୍ତି । 'ସମାଜ' ସମ୍ବାଦପତ୍ରର ସଂପାଦକ ଭାବରେ କିଛିଦିନ ପାଇଁ ଦାୟିତ୍ୱ ତୁଲାଇ ହରିହର ଯଶସ୍ୱୀ ହୋଇଛନ୍ତି । ଅଦ୍ୟାବଧି ନାରୀଜାଗରଣ ଓ ନାରୀ ସ୍ୱାଧୀନତା ପୂର୍ଣ୍ଣତା ଲାଭ କରିନଥିଲେ ମଧ୍ୟ ବିଂଶ ଶତାବ୍ଦୀର ପ୍ରାରମ୍ଭିକ ପର୍ଯ୍ୟାୟ ଅପେକ୍ଷା ବେଶ୍ ବିକଶିତ ସ୍ତରରେ ରହିଛି । କିନ୍ତୁ ଆଚାର୍ଯ୍ୟ ହରିହରଙ୍କ ସମୟରେ ନାରୀ ସ୍ୱାଧୀନତାକୁ ସମାଜ ଉଚ୍ଛୃଙ୍ଖଳତା ଆଖ୍ୟାରେ ଆଖ୍ୟାୟିତ କରୁଥିଲା । ସେଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଆଚାର୍ଯ୍ୟ ହରିହର ଓ ଶ୍ରୀମତୀ ରମାଦେବୀ ମିଳିତ ଭାବରେ ନାରୀ ଜାଗରଣ ଓ ମୁକ୍ତି ସଂଗ୍ରାମ ଦିଗରେ କାର୍ଯ୍ୟ ଆରମ୍ଭ କଲେ । ଏତଦ୍ୱାରା ଉଭୟେ ସମସ୍ତଙ୍କର ଅଗାଧ ବିଶ୍ୱାସର ପାତ୍ରପାତ୍ରୀ ହୋଇ ଉଠିଲେ । ନାରୀ ଭିତରେ ମାତା ଓ ଭଗିନୀର ସତ୍ତା ଅନୁଭବ କରୁଥିଲେ ଋଷିପ୍ରାଣ ହରିହର । ତେଣୁ ତାଙ୍କର ନିଷ୍କଳଙ୍କ ଚରିତ୍ର ଓ ବିଶ୍ୱସ୍ତତା ହେତୁ ମାତ୍ର ୪୫ ବର୍ଷ ବୟସରେ ୧୯୨୪ରେ ପୁରୀସ୍ଥିତ ବିଧବାଶ୍ରମର ପରିଚାଳନା ଦାୟିତ୍ୱ ତାଙ୍କୁ ଅର୍ପଣ କରାଯାଇଥିଲା । ତାଙ୍କ ସହାୟତାରେ ବହୁସଂଖ୍ୟକ ମହିଳା ଆସି ପୁରୀ ମୋଚି ସାହିର ଟ୍ରେନିଂ କ୍ୟାମ୍ପରେ ଯୋଗ ଦେଇଥିଲେ । ରମାଦେବୀ ଓ ମାଳତୀଦେବୀ ପ୍ରଭୃତି ନାରୀନେତ୍ରୀଗଣ ଆଚାର୍ଯ୍ୟ ହରିହରଙ୍କ ନାରୀଜାଗରଣ କ୍ଷେତ୍ରରେ ମହନୀୟ ଅବଦାନକୁ ମୁକ୍ତକଣ୍ଠରେ ସ୍ୱୀକାର କରିଯାଇଛନ୍ତି ।

ଗାନ୍ଧିଜୀଙ୍କର ପ୍ରବର୍ତ୍ତିତ ହରିଜନ ଆନ୍ଦୋଳନ ଯେତେବେଳେ ଓଡ଼ିଶାରେ ଆରମ୍ଭ ହେଲା ଆଚାର୍ଯ୍ୟ ହରିହର ତାହାର ନେତୃତ୍ୱ ନେଲେ । ତାଙ୍କଭଳି ଜଣେ ନିଷ୍ଠାପର ସଚ୍ଚରିତ୍ର ଶାସ୍ତ୍ରବିତ୍ ବ୍ରାହ୍ମଣ ନେତୃତ୍ୱ ନେବାରୁ ଓଡ଼ିଶାର ହରିଜନ ଆନ୍ଦୋଳନର ମହତ୍ତ୍ୱ ଆରମ୍ଭରୁ ହିଁ ବଢ଼ିଗଲା । ୧୯୩୪ରେ ବ୍ୟାପକ ଭାବରେ ଓଡ଼ିଶାରେ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଚାଲିଲା । ମହାତ୍ମାଗାନ୍ଧୀ ପୁରୀଠାରୁ ଭଦ୍ରଖ ପର୍ଯ୍ୟନ୍ତ ପଦଯାତ୍ରା କରି ଅସ୍ପୃଶ୍ୟତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର ଏହି ପଦଯାତ୍ରାର କାହାଣୀ ସମଗ୍ର ଭାରତ ବର୍ଷରେ ପ୍ରଚାରିତ ହୋଇଥିଲା ।

# ସେବା ଓ ସଂସ୍କାର ବେଦୀରେ ଆଚାର୍ଯ୍ୟେ

ଜନସାଧାରଣଙ୍କ ସେବା ପାଇଁ ସଂପ୍ରତି ଅନେକ ସେବା ଉପଲବ୍ଧ, ଯଥା ପ୍ରଶାସନିକ ସେବା, ପରିବହନ ସେବା, ସ୍ୱାସ୍ଥ୍ୟ ସେବା ଇତ୍ୟାଦି । କିନ୍ତୁ ପ୍ରତି ସେବା ପାଇଁ ବିନିମୟ ମୂଲ୍ୟ ରହିଥାଏ । ପ୍ରତିଦାନର ଆଶା ନରଖି ଅନ୍ୟର ଆବଶ୍ୟକ ସମୟରେ ସେବା ଯୋଗାଇଦେବା ହିଁ ଉପକାର । ଭାରତୀୟ ହିନ୍ଦୁ ଧର୍ମର ମୂଳମନ୍ତ୍ର 'ପରୋପକାରାୟ ସ୍ୱର୍ଗାୟ' ଓ 'ବସୁଧୈବ କୁଟୁମ୍ବକମ୍' ପ୍ରତ୍ୟେକ ସମୟରେ ଅବତାରୀ ମହାପୁରୁଷଙ୍କ ଦ୍ୱାରା ସଂପୁଟିତ ଓ ପୁରଶ୍ଚରିତ ହୋଇ ଆସିଛି । ଏହି ମହାପୁରୁଷମାନଙ୍କ ହୃଦୟରେ ନିୟମିତ ଝଂକୃତ ହେଉଥିବା ସେହି ଅମୀୟ ସଂକଳ୍ପ ଭୀମଭୋଇଙ୍କ ପରି କବିଙ୍କ ତୁଣ୍ଡରେ କାବ୍ୟିକ ଛନ୍ଦରେ ପ୍ରକାଶିତ ହୋଇଛି—

''ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।''

ମହାଦେବଙ୍କ ପରି ସଂସାରର ସମସ୍ତ ଦୁଃଖ, ଦୈନ୍ୟ ଓ ସନ୍ତାପର ବିଷକୁ ହସି ହସି ଯେ ପାନ କରି ସମାଜ କଲ୍ୟାଣ ନିମିତ୍ତ ସର୍ବସ୍ୱ ପରିତ୍ୟାଗ କରିପାରେ ସେପରି ମହାନୁଭବଙ୍କ ଚରଣତଳେ କୋଟି କୋଟି ପ୍ରଣାମ । ଏହିଭଳି ଆଶା-ରହିତ ସୁପୁରୁଷଗଣଙ୍କୁ ବିନମ୍ର କୃତଜ୍ଞତା ଜ୍ଞାପନ ଛଡ଼ା ଆଉ କ'ଣ ବା ପ୍ରତିମୂଲ୍ୟ ଦେଇ ହେବ ?

ଏହିଭଳି ଜଣେ ମହାପୁରୁଷ ଥିଲେ ହରିହର । ତାଙ୍କର ତ୍ୟାଗ, ସେବା ଓ ସଂସ୍କାରମୁଖୀ ମନୋଭାବ ବିଷୟରେ ହୁଏତ ସମସ୍ତେ ଏକମତ ହେବେ ମାତ୍ର ସେ

ସମ୍ବନ୍ଧୀୟ ଦୃଷ୍ଟାନ୍ତ ସଂଗ୍ରହର ଏକ ପରିପୂର୍ଣ୍ଣ ଚିତ୍ର ମହାକାଳ ବ୍ୟତୀତ କିଏ ଲିପିବଦ୍ଧ କରିନେଇଥିବ ? ସ୍କୁଲର ଶିକ୍ଷକ, ବିଧବାଶ୍ରମର ପରିଚାଳକ, ସତ୍ୟାଗ୍ରହୀମାନଙ୍କର ସେନାପତି, ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି, ହରିଜନ ସେବକ ସଂଘ ଓ ମୌଳିକ ଶିକ୍ଷା ପରିଷଦର ସଭାପତି ଭାବେ ସେ ନିଜର ବହୁମୁଖୀ ପ୍ରତିଭାର ପରିଚୟ ଦେଇଥିଲେ । ଶରୀରର କ୍ଷତ ଓ ହୃଦୟର କ୍ଷତକୁ ଆରୋଗ୍ୟ କରାଇବାରେ ସେ ଥିଲେ ସିଦ୍ଧହସ୍ତ ଧନ୍ୱନ୍ତରୀ । ସେବା ଓ ସଂସ୍କାର ବେଦୀରେ ଉପଯୁକ୍ତ ପୁରୋଧା ସାଜି ଜୀବନ ଯଜ୍ଞରେ ଆତ୍ମବଳି ଦେଇଥିବା ଆଚାର୍ଯ୍ୟ ହରିହର ଆଜି ନାହାନ୍ତି ସତ କିନ୍ତୁ ତାଙ୍କ ଦ୍ୱାରା ଅନୁପ୍ରାଣିତ ଅନେକ କୃତଜ୍ଞ ଛାତ୍ର, ସେବିତ ଦୀନଦୁଃଖୀ, ସତ୍ୟାଗ୍ରହୀ ଏବେ ବି ତାଙ୍କର ସ୍ମୃତି ରୋମନ୍ଥନ କରୁଛନ୍ତି । ''ଉପବୀତେନ ବ୍ରାହ୍ମଣ'' ତତ୍ତ୍ୱକୁ ସେ ଅସ୍ୱୀକାର କରୁଥିଲେ । ବ୍ରହ୍ମତତ୍ତ୍ୱରେ ବ୍ରତୀ ବ୍ରହ୍ମଚାରୀ ଶମ, ଦମ, ଧୃତି, ଦ୍ରାକ୍ଷ୍ୟ ଏହି ଚତୁର୍ବିଧ ବିଭବ ମଣ୍ଡିତ ବ୍ରାହ୍ମଣର ବିନା ବିଭାବରେ ଉପବୀତ ଧାରଣକୁ ସେ ବିଦ୍ରୂପ କରୁଥିଲେ । ''ସର୍ବେ ଭବନ୍ତୁ ସୁଖୀନୋ, ସର୍ବେସନ୍ତୁ ନିରାମୟା, ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମାଂ କଶ୍ଚିତ୍ ଦୁଃଖ ଭାଗ୍ ଭବେତ୍''– ହେଉଛି ବ୍ରାହ୍ମଣର ଅନୁଚିନ୍ତା । ବେଦୋକ୍ତ 'ବ୍ରାହ୍ମଣ'କୁ ସଂପୁଟିତ କରିବା ଜନିତ ଧ୍ୱନିରେ ଦିଗବିଦିଗ ପ୍ରକମ୍ପିତ କରିବା ବ୍ରାହ୍ମଣର ବାହ୍ୟାଚାର ମାତ୍ର । ଅନ୍ତଃଶୁଦ୍ଧି ନିମିତ୍ତ ପ୍ରତ୍ୟେକ ଜୀବ ମଧ୍ୟରେ ବ୍ରହ୍ମସତ୍ତାର ଉପଲବ୍ଧି ହିଁ ଆବଶ୍ୟକ । ଅନ୍ତଃକରଣ ଓ ବାହ୍ୟକରଣରେ ଯେ ଶୁଚିମନ୍ତ, ପବିତ୍ର ନୁହେଁ ସେ ଯଜ୍ଞୋପବୀତଧାରୀ ହୋଇପାରେ ମାତ୍ର ବ୍ରାହ୍ମଣ ପଦବାଚ୍ୟ ନୁହେଁ । ଯେପରି କର୍ପୂରଚନ୍ଦନ ମିଶ୍ରିତ କରି ରସୁଣ ରୋପଣ କଲେ ତାର କୁତ୍ସିତ ଗନ୍ଧ ନିବାରିତ ହୋଇନଥାଏ, ସେପରି ଅନ୍ତଃକରଣ ପବିତ୍ର ନଥାଇ କେବଳ ଉପବୀତ ଧାରଣ କଲେ ଜଣେ ନିଜକୁ ବ୍ରାହ୍ମଣ ବୋଲାଇ ପାରିବ ନାହିଁ । ଗୀତାରେ ଭଗବାନ୍ କୃଷ୍ଣ କହିଛନ୍ତି– ''ଚାତୁର୍ବର୍ଣ୍ଣ୍ୟଂ ମୟା ସ୍ରଷ୍ଟା ଗୁଣକର୍ମ ବିଭାଗସ'' । ଗୁଣ ଓ କର୍ମକୁ ନେଇ ଜାତି, ଜନ୍ମକୁ ନେଇ ନୁହେଁ । ଉତ୍ତରାଧିକାର ସୂତ୍ରରେ ପିତାର ଅଜ୍ଞାନତା ବା ବିଜ୍ଞତା ଯଦି ପୁତ୍ର ପାଇ ନପାରୁଛି ବ୍ରହ୍ମତ୍ୱ କିପରି ପାଇପାରିବ । ଯାହା ସାଧନା ଓ ଆୟାସଲବ୍ଧ ବସ୍ତୁ ତାକୁ ବଂଶାନୁକ୍ରମରେ ସଂପୃକ୍ତ କରାଇଦେବା ଏକ ବିଡ଼ମ୍ବନା ନୁହେଁ କି ? ତେଣୁ ସଂସ୍କାର ନାମରେ ପ୍ରଚଳିତ ତତ୍କାଳୀନ କୁସଂସ୍କାରକୁ ସ୍ୱକୀୟ ଦର୍ଶନ ମାଧ୍ୟମରେ ଭିନ୍ନ ରୂପଦେଇ

ତାହାର ପରିମାର୍ଜନ ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲେ ହରିହର । ସେଥିପାଇଁ ସେ ନିଜର ପଇତା ବାହାର କରି ଫିଙ୍ଗି ଦେଇଥିଲେ । କିନ୍ତୁ ଅତ୍ୟନ୍ତ ସରଳ ଭାବରେ ଘଟଣାଟିକୁ ସହଜ କରିଦେବାକୁ ଯାଇ ସେ ବୁଝାଇ ଦେଇଥିଲେ– ''ମୁଁ ଅନୁଭବ କରୁଛି ମୋ ଭିତରେ ସବୁ ଜାତି ଅଛନ୍ତି । ମୁଁ ଗୋଟିଏ ଜାତି ଭିତରେ ବାନ୍ଧି ହେବାଟା କ'ଣ ଠିକ୍ ହେବ ? ଅହଂ ଭାବରୁ ମୁଁ ମୁକ୍ତ ହେବାକୁ ଚାହେଁ । ଯେତେବେଳେ ପଇତାଟିକୁ ମୁଁ ଦେଖୁଛି, ଅଲକ୍ଷ୍ୟରେ ମୋ ମନ ଭିତରେ ଭାବୁଛି ଯେ ମୁଁ ଟିକିଏ ଉଚ୍ଚ ଜାତିର ଲୋକ । ମୋର ଜୀବନ ସହିତ ଏହା ଖାପଖାଉନାହିଁ । କୌଣସି ଅହଂଭାବରୁ ନୁହେଁ ମୋ ମନକୁ ଶାନ୍ତି ଦେବା ପାଇଁ ଏପରି କରୁଛି ।''

ବଢ଼ି, ମରୁଡ଼ି, ଦୁର୍ଭିକ୍ଷ, ହଇଜା ବେଳେ ବେସରକାରୀ ସାହାଯ୍ୟ ଓ ସେବାର ଇତିହାସରେ ହରିହରଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଛାତ୍ରମାନଙ୍କୁ ସଂଗଠିତ କରି ସେବାଦିଗରେ ବ୍ରତୀ କରାଇବାର କୌଶଳ ତାଙ୍କୁ ଜଣାଥିଲା । ସେ ଯଥାର୍ଥରେ ସେବାର କଳା ଓ ବିଜ୍ଞାନ ଉଭୟକୁ ଆୟତ୍ତ କରିଥିଲେ । ଅତ୍ୟାଚାର ସହି ସହି ଯେଉଁ ପୀଡ଼ିତମାନଙ୍କର ଅଣ୍ଟା ନଇଁ ଯାଇଛି, ସେମାନଙ୍କ ହାତ ଧରି, ଅଣ୍ଟାକୁ ଆଉଁଶି ଦେଇ ସିଧା ବସେଇବା କାର୍ଯ୍ୟକୁ ସେ ସେବା ବୋଲି ଧରି ନେଇଥିଲେ ।

ସେତେବେଳେ ଓଡ଼ିଶାରେ ଅସ୍ପୃଶ୍ୟତା ବିରୋଧୀ ଆନ୍ଦୋଳନ ଚାଲିଥାଏ । ଯେଉଁମାନଙ୍କ ବିରୁଦ୍ଧରେ ଏହି ଆନ୍ଦୋଳନ ସେମାନଙ୍କ ଭିତରୁ ଜଣେ ଏହି ଆନ୍ଦୋଳନର ନେତୃତ୍ୱ ନେଇଥାନ୍ତି । ଉପବୀତହୀନ ବ୍ରାହ୍ମଣ ହରିହରଙ୍କ ନେତୃତ୍ୱକୁ ତଥାକଥିତ ସମାଜର ବଡ଼ପଣ୍ଡାଏ ଅତ୍ୟନ୍ତ ହୀନ ଓ କୁତ୍ସାପୂର୍ଣ୍ଣ ସମାଲୋଚନା କରୁଥାନ୍ତି । ଋଷିପ୍ରାଣ ହରିହର କିନ୍ତୁ ଏଥିପ୍ରତି କର୍ଣ୍ଣପାତ କରୁନଥାନ୍ତି । ଜ୍ଞାନଦୀପ୍ତ ଚକ୍ଷୁଯୁଗଳ ନିଷ୍ପ୍ରଭ ହେବା ବଦଳରେ ସମାଜପତିମାନଙ୍କର ଅସହିଷ୍ଣୁତା ପ୍ରତି ପ୍ରତିକ୍ରିୟା ଭାବରେ ସ୍ମିତହାସ୍ୟ ଛଡ଼ା ଆଉ କିଛି ନଥାଏ ତାଙ୍କ ପାଖରେ । ''ଅଗାଧ ଜଳସଞ୍ଚାରୀ ରୋହିତ ନୈବ ଗର୍ବିତଂ, ଗଣ୍ଡୁଷ ଜଳମାତ୍ରେଣ ସର୍ଫରୀ ଫର୍ଫରାୟତେ'' । ହରିହର କେବଳ ସୁଯୋଗ ଖୋଜୁଥାନ୍ତି କଲ୍ୟାଣପନ୍ଥୀ ବୈଦିକ ରୀତିକୁ କ୍ରମ-କୁତ୍ସିତ କଦାକାର କରିଦେଇଥିବା ସ୍ୱାର୍ଥାନ୍ଧ ଗୋଷ୍ଠୀକୁ ସମୟୋପଯୋଗୀ ପ୍ରାସଙ୍ଗିକ ଶିକ୍ଷାଦାନ ନିମନ୍ତେ । ଦିନକର କଥା,

ଜଣେ ହରିଜନର ମୃତ୍ୟୁ ହୁଏ । ମୃତକର କେହି ବନ୍ଧୁ ପରିଜନ ନଥିବାରୁ ସମାଜସେବୀ ହରିହର କେତେଜଣ ସ୍ୱେଚ୍ଛାସେବକମାନଙ୍କ ସହାୟତାରେ ତାର ଅନ୍ତ୍ୟେଷ୍ଟିକ୍ରିୟା କରାଇଲେ । ପ୍ରତିକ୍ରିୟା ସ୍ୱରୂପ ବ୍ରାହ୍ମଣମାନେ ତାଙ୍କୁ ଜାତିରୁ ଅଟକ କରିବା ପାଇଁ ବାହାରିଲେ । ସଭା ବସିଲା । ସଂସ୍କୃତ ଟୋଲ୍‌ର ପଣ୍ଡିତ ମନୁସଂହିତା ବାହାର କରି ସେଥିରୁ ଉଦ୍ଧାର କରି ଦେଖାଇଦେଲେ ଯେ, ''ଅନାଥର ଶବସତ୍କାର କଲେ ଯଜ୍ଞର ଫଳପ୍ରାପ୍ତି ହୁଏ । ତେଣୁ ହରିବାବୁ ପ୍ରଭୃତି ଗୋଟିଏ ଅନାଥର ଶବଦାହ କରିଛନ୍ତି, ସେମାନେ ପାପ ତ କରିନାହାନ୍ତି ବରଂ ବହୁ ପୁଣ୍ୟ ଅର୍ଜନ କରିଛନ୍ତି ।''

ଆଚାର୍ଯ୍ୟ ହରିହରଙ୍କ ବିଷୟରେ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କ ଆତ୍ମକାହାଣୀରେ ଲେଖିଛନ୍ତି— ''ସେ ଥିଲେ ଆମ ସମସ୍ତଙ୍କର ହରିଭାଇନା । ସେବା ଓ ଚରିତ୍ର ବାହାରେ ଆମେ ତାଙ୍କୁ ଆଦର୍ଶ କରି ଧରିଥିଲୁ । ସେ ମିଛ କହି ଜାଣୁ ନଥିଲେ । ଶିଖିବା ପାଇଁ ରାଜି ହୋଇ ପାଞ୍ଚଥର ଆବୃତ୍ତି କଲେ ମଧ୍ୟ କହିଲାବେଳକୁ ସତଟା ପାଟିରୁ ଗାଳି ପକାଉଥିଲେ । ଅବଶ୍ୟ ସତ୍ୟ କହିବା ମଣିଷର ସହଜାତ ପ୍ରବୃତ୍ତି । ମିଥ୍ୟା କହିବା ଏକ ସାଧନାଲବ୍ଧ ଅଭ୍ୟାସ । ସମସ୍ତେ ମିଥ୍ୟା କହି ପାରିବେ ନାହିଁ । ଏ ପ୍ରକାରର ବାମମାର୍ଗୀ ସାଧନା ପାଇଁ ସମସ୍ତେ ଅଳ୍ପେ ବହୁତେ ଚେଷ୍ଟିତ ଥାଆନ୍ତି । ମାତ୍ର ହରିହର ଥିଲେ ଏହାର ବ୍ୟତିକ୍ରମ । ଈଶ୍ୱରଙ୍କର ସନ୍ତାନ ଭାବରେ ଅମୃତତ୍ୱ ଓ ସତ୍ୟପ୍ରିୟତା ଥିଲା ତାଙ୍କ ଜୀବନର ବ୍ରତ । କେବଳ ଓଡ଼ିଶା ବା ଭାରତ କାହିଁକି, ସମଗ୍ର ପୃଥିବୀରେ ଏପର୍ଯ୍ୟନ୍ତ ଖୁବ୍ କମ୍ ଲୋକ ଜନ୍ମ ହୋଇଛନ୍ତି ଯେଉଁମାନେ ମିଛ କହି ଜାଣୁନଥିବେ ।''

# ମହାପ୍ରସ୍ଥାଣ

କେବଳ ନାଟକର ସ୍ରଷ୍ଟାହିଁ ଜାଣେ ଉଦ୍ଦିଷ୍ଟ ନାଟକରେ ନିର୍ଦ୍ଦିଷ୍ଟ ନାୟକର ଅଭିନୟ ସମୟ ସୀମା କେଉଁ ପର୍ଯ୍ୟନ୍ତ ବିସ୍ତୃତ । ସେହି ଅନୁସାରେ ସଂଯୋଜିତ ହୋଇଥାଏ ତାର ଚରିତ୍ର । ଦର୍ଶକମାନେ କେବଳ ଆଶଙ୍କା କରନ୍ତି, ଆଶା କରନ୍ତି କିନ୍ତୁ ଅସଲ କଥା ସମସ୍ତଙ୍କ ପାଖରେ ଅଜ୍ଞାତ ଥାଏ ନାଟ୍ୟକାର ବ୍ୟତୀତ । ମୃତ୍ୟୁଲୋକରେ ଅମରତ୍ୱର କଳ୍ପନା ଅବାସ୍ତବ ନୁହେଁ କି ? ଜାତସ୍ୟହି ଧ୍ରୁବ ମୃତ୍ୟୁ .... ଜନ୍ମିତର ମୃତ୍ୟୁ ସୁନିଶ୍ଚିତ । ୧୯୭୧ ମସିହା ଫେବୃୟାରୀ ୧୨ ତାରିଖ ଦିନ ଆଚାର୍ଯ୍ୟ ମହାଶୟଙ୍କୁ ୯୪ ବର୍ଷ ଚାଲିଲା । ତାହାର ଠିକ୍ ସାତଦିନପରେ ଫେବୃୟାରୀ ୧୯ ତାରିଖରେ ହଠାତ୍ ଅସୁସ୍ଥତା ବୋଧ କଲେ ଆଚାର୍ଯ୍ୟେ । ତାହା ପୂର୍ବରୁ ମଧ ଆଚାର୍ଯ୍ୟଙ୍କର ଅବସ୍ଥା ଭଲ ନଥିଲା । ମୋଟ ଉପରେ ଦେଖିବାକୁ ଗଲେ ୧୯୬୮ର ଶେଷ ଭାଗରୁ ତାଙ୍କର ଅସୁସ୍ଥତା ଆରମ୍ଭ ହୋଇଥିଲା । ଜରା ବ୍ୟାଧିଗ୍ରସ୍ତ ଶରୀର ତାଙ୍କର ଶୀର୍ଣ୍ଣ ହୋଇ ଆସୁଥାଏ । ଦୃଷ୍ଟିଶକ୍ତି ଓ ମେଧାଶକ୍ତି ମଧ କ୍ଷୀଣତର ହୋଇ ଆସୁଥାଏ । କ୍ରମଶଃ ସେ ଶ୍ରବଣଶକ୍ତିର ମଧ ଦୁର୍ବଳତା ଅନୁଭବ କଲେ । ଖାଦ୍ୟ ଖାଇବା ପ୍ରତି ତାଙ୍କର ବିତୃଷ୍ଣା ଆସିଯାଇଥିଲା । ଖାଦ୍ୟ ଖୁଆଇବା ପାଇଁ କେହି ଉଦ୍ୟମ କଲେ ସେ ପିଲାଙ୍କ ପରି ଜିଦ୍ ଧରି କ୍ରନ୍ଦନ କରୁଥିଲେ । ଅଗତ୍ୟା ପାନୀୟ ଯୋଗେ ତାଙ୍କୁ ସୁଷମ ଖାଦ୍ୟ ଯୋଗାଣର ପ୍ରୟାସ କରାଗଲା । ଏହି ସମୟରେ କଟକର ଥୋରିଆ ସାହିସ୍ଥ ଭୂଦାନ ଅଫିସ୍‌ରେ ତାଙ୍କୁ ଚିକିତ୍ସା କରାଯାଉଥାଏ । ଦୈନିକ ଦର୍ଶନାର୍ଥୀମାନଙ୍କୁ ତାଙ୍କର ଗୋଟିଏ ଉପଦେଶ ଥିଲା "ଭଲ ମଣିଷ ହୁଅ" । ପାନୀୟ ଖାଦ୍ୟ ଭାବରେ ଘୋଳଦହି, ଫଳରସ ଓ ହର୍ଲିକ୍ସ ତାଙ୍କର ଜରା ଉପଶମ କରିପାରିନଥିଲା । ତାଙ୍କ ପାଖେ ପାଖେ ଡାକ୍ତର ସଚ୍ଚିବାବୁ, ଶରତ ଚନ୍ଦ୍ର ମିଶ୍ର, ସୁଧାକର ଆଚାର୍ଯ୍ୟ, ହରିଶ୍ଚନ୍ଦ୍ର ରାୟ, ଗୁରୁପ୍ରସାଦ

ମହାନ୍ତି, ନୃସିଂହ ଚରଣ ମିଶ୍ର, କିଶୋର ମିଶ୍ର, ବନମାଳୀ ପ୍ରମୁଖ ଉପସ୍ଥିତ ରହି ଯତ୍ନ ନେଉଥାନ୍ତି । ରମାଦେବୀ, ଭାଇବୋହୂ ତାରାମଣି, ପୁତୁରା ରବିନାରାୟଣ, ନବକିଶୋର, ଉମାଚରଣ ଇତ୍ୟାଦି, ଝିଆରୀ ଚାରୁଲତା, ଗୀତା, ଝିଆରୀ ଜ୍ୱାଇଁ ରାଧିକାପ୍ରସାଦ, କାଳିପ୍ରସାଦ ମଧ୍ୟ ତାଙ୍କର ସେବାଯତ୍ନ ପାଇଁ ଉପସ୍ଥିତ ଥାଆନ୍ତି । ୧୯୭୧ ମସିହା ଫେବୃୟାରୀ ୧୯ ତାରିଖ ଦିନ ରାତ୍ରିରେ ତାଙ୍କର ଛାତିରେ କଫ ଜମିଗଲା ଓ ସେ ନିଃଶ୍ୱାସ ପ୍ରଶ୍ୱାସ ଗ୍ରହଣ କରିବାରେ କଷ୍ଟ ଅନୁଭବ କଲେ । ୨୦ ତାରିଖ ଦିନ ମଧ୍ୟାହ୍ନ ବେଳକୁ ତାଙ୍କର ଅବସ୍ଥା ଉଦ୍‌ବେଗଜନକ ହୋଇ ପଡ଼ିଲା । ଆଗରୁ ଅନେକ ଥର ଏପରି ହୋଇଛି ଓ ତାଙ୍କର ପ୍ରିୟ ପରିଜନ ଖୁବ୍ ଶୀଘ୍ର ଏହି ଐହିକ ଯନ୍ତ୍ରଣାରୁ ମୁକ୍ତି ଭିକ୍ଷା କରି ଭଗବାନଙ୍କୁ ପ୍ରାର୍ଥନା ଜଣାଇଛନ୍ତି । ଏଥର ଅନ୍ତିମ ସମୟ ଜାଣି ତାଙ୍କର ଶଯ୍ୟା ନିକଟରେ ସମବେତ ପ୍ରାର୍ଥନା କରାଗଲା । ତାଙ୍କର ଅତିପ୍ରିୟ ଶ୍ରୀମଦ୍ ଭାଗବତ ଗୀତା ମଧ୍ୟ ଆବୃତ୍ତି କରାଗଲା । ୨୧ ତାରିଖ ସକାଳ ଘ୬-୪୭ ମିନିଟ୍‌ରେ ଓଡ଼ିଶା ନଭମଣ୍ଡଳର ଅନ୍ୟତମ ଉଜ୍ଜ୍ୱଳମୟ ତାରକା ଖସିଯାଇ ମହାକାଶରେ ବିଲୀନ ହୋଇଗଲା । ସବୁ କିଛି ସରିଯାଇଥିଲା । ବିଂଶ ଶତାବ୍ଦୀର ମୂର୍ତ୍ତିମନ୍ତ ଇତିହାସ, ଉତ୍କଳର ମହାନ୍ ଶିକ୍ଷକ, ସଂଗ୍ରାମୀ ମୁକୁଟହୀନ ସମ୍ରାଟଙ୍କର ମରଶରୀର ପୁଷ୍ପ ଓ ଅବିର ମଣ୍ଡିତ ହୋଇ ସମସ୍ତ ଛାତ୍ରଛାତ୍ରୀଗଣଙ୍କୁ ମହାଶୀର୍ବାଦ ପ୍ରଦାନ କରିବାକୁ ଅପେକ୍ଷା କରିଥାଏ ଯେପରି । ତତ୍କାଳୀନ ରାଜ୍ୟପାଳ ଏହି ମହାପୁରୁଷଙ୍କର ମହାପ୍ରୟାଣରେ ଲୋତକାପ୍ଳୁତ ନୟନରେ ଶୋକବାର୍ତ୍ତାରେ କହିଥିଲେ, ''ଆଚାର୍ଯ୍ୟ ହରିହର ଦାସ ସେବା, ସତ୍ୟ ଓ ଅହିଂସାର ପ୍ରତୀକ ଥିଲେ । ସେ ଥିଲେ ମହାତ୍ମାଗାନ୍ଧୀ ଓ ଉତ୍କଳମଣି ଗୋପବନ୍ଧୁଙ୍କ ସମସାମୟିକ । ଗାନ୍ଧିଜୀଙ୍କ ଆଦର୍ଶରେ ସମଗ୍ର ଓଡ଼ିଶାବାସୀଙ୍କୁ ସେ ସର୍ବୋଦୟ ଭାବଧାରାରେ ଉଦ୍‌ବୁଦ୍ଧ କରିଥିଲେ । ତାଙ୍କର ମହାନ୍ ଆଦର୍ଶ ଓଡ଼ିଶାର ଯୁବସମାଜକୁ ପ୍ରେରଣା ଦେଉ ।'' ଓଡ଼ିଶା ତଥା ଓଡ଼ିଶା ବାହାରୁ ବିଭିନ୍ନ ସ୍ଥାନରୁ ଶୋକବାର୍ତ୍ତାମାନ ଆସି ପହଞ୍ଚିଲା । ଓଡ଼ିଶା ସ୍କୁଲ ବିଭାଗର ନିର୍ଦ୍ଦେଶକ ଡକ୍ଟର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ଶୋକ ପ୍ରକାଶ କରି କହିଥିଲେ ଯେ, ''ଆଚାର୍ଯ୍ୟ ମହାଶୟଙ୍କ ସମାଜ ଓ ଦେଶସେବାରେ ଆତ୍ମୋତ୍ସର୍ଗ ତଥା ସତ୍ୟ ଓ ଅହିଂସାର ଆଦର୍ଶ ବିରଳ । ତାଙ୍କର ମହାପ୍ରୟାଣ ଏକ ଅପୂରଣୀୟ କ୍ଷତି ।'' ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ

ନନ୍ଦିନୀ ଶତପଥୀ ଶୋକ ପ୍ରକାଶ କରି କହିଥିଲେ, ''ଆଚାର୍ଯ୍ୟ ମହାଶୟଙ୍କ ତିରୋଧାନରେ ଗୋଟିଏ ଯୁଗର ଅବସାନ ଘଟିଲା । ସମଗ୍ର ଦେଶରେ ଏ ଅଭାବ ପୂରଣ ହେବାର ନୁହେଁ ।'' ଆଚାର୍ଯ୍ୟଙ୍କର ମରଶରୀରର ଅନ୍ତିମ ଶୋଭାଯାତ୍ରା ପାଇଁ ସମସ୍ତ ପ୍ରକାର ଆୟୋଜନ କରାଗଲା । ଦିବା ଏଗାର ଘଟିକା ସମୟରେ ଭୂଦାନ ଅଫିସ୍‌ରୁ ଶବ ଶୋଭାଯାତ୍ରା ବାହାରିଲା । ସାକ୍ଷୀଗୋପାଳକୁ ଶବ ନେବାର ବ୍ୟବସ୍ଥା ହୋଇଥିଲା । ପୁରୀରୁ ବହୁ କୃତଜ୍ଞ ଶିଷ୍ୟଶିଷ୍ୟା ତଥା ଶୁଭେଚ୍ଛୁ ଟେଲିଫୋନ୍ ଯୋଗେ ନିବେଦନ କରିଥିଲେ ଯେପରି ପୁରୀ ସହରର ଲୋକେ ତାଙ୍କର ଅନ୍ତିମ ଦର୍ଶନର ସୁଯୋଗ ପାଆନ୍ତି । ତେଣୁ ଶୋଭାଯାତ୍ରା ବାଣୀବିହାର ବାଟେ ପୁରୀ ଯାଇ ସେଠାରୁ ଫେରି ବକୁଳବନ ସମାଧି ପୀଠରେ ଶେଷକୃତ୍ୟ ସଂପନ୍ନ ହେବ ବୋଲି ସ୍ଥିର କରାଯାଇଥିଲା । କଟକଠାରୁ ପୁରୀ ରାସ୍ତାରେ ଦେଖଣାହାରିଙ୍କର ପ୍ରବଳ ଭିଡ଼ । ପୁଷ୍ପାଞ୍ଜଳି ନେଇ ଅପେକ୍ଷାରତ ହଜାର ହଜାର ଦର୍ଶନାର୍ଥୀ ପୁଷ୍ପ ବୃଷ୍ଟି ପାଇଁ ଯେପରି ଅଧୀରତା ପ୍ରକଟ କରୁଥାଆନ୍ତି, ଶବ ସ୍ପର୍ଶ କରି ତଳେ ଖସିପଡୁଥିବା ପୁଷ୍ପକୁ ସାଇତି ନେବା ପାଇଁ ଲଗିଥାଏ ସେହିପରି ଠେଲାପେଲା । କାଦୁଆ ଆଶ୍ରମ, ଚନ୍ଦନପୁର, ବୀର ହରେକୃଷ୍ଣପୁର, ବାଟଗାଁ ବାଟ ଦେଇ ଶବବାହକ ଗାଡ଼ିଟି ପୁରୀରେ ଅପରାହ୍ଣ ୪ଟା ସମୟରେ ପହଞ୍ଚିଲା । କ୍ରନ୍ଦନରୋଳ, ହରିବୋଲ, ହୁଳହୁଳି ଧ୍ୱନିରେ ଦିଗବିଦିଗ ପ୍ରକମ୍ପିତ ହେଉଥାଏ । ପୁରୀରୁ ଫେରି ଶବାଧାର ପହଞ୍ଚିଲା ସାକ୍ଷୀଗୋପାଳରେ ସଂଧ୍ୟା ୫ଟା ସମୟରେ । ସେଠାରୁ ସଂକୀର୍ତ୍ତନ କରି ତାଙ୍କର ଜନ୍ମସ୍ଥାନ ପୁଣ୍ୟପୀଠ ଶ୍ରୀରାମଚନ୍ଦ୍ରପୁରକୁ ନିଆଗଲା । ସଂଧ୍ୟା ୬ଟା ବେଳକୁ ତାଙ୍କର ଶବକୁ ଦାସେ ଆପଣେଙ୍କ ସମାଧିର ଡାହାଣ ପାଖରେ ନିର୍ମିତ ଜୁଇ ଉପରେ ଶୁଆଇ ଦିଆଗଲା । ଶ୍ରୀମନ୍ଦିରର ରୋଷଶାଳାରୁ ଆନୀତ ପବିତ୍ର ଅଗ୍ନିଶିଖା ସ୍ପର୍ଶ କରାଇ ମୁଖାଗ୍ନି ଦେଲେ ତାଙ୍କର କନିଷ୍ଠ ଭ୍ରାତା ଗୋବିନ୍ଦଚନ୍ଦ୍ର ଦାଶ । ସାକ୍ଷୀଗୋପାଳର ବକୁଳ-ଛୁରିଅନା ବନରେ ତାଙ୍କର ମରଶରୀର ସବୁଦିନ ପାଇଁ ମାଟିରେ ମିଶିଗଲା ।

# ଆଚାର୍ଯ୍ୟଙ୍କ ଦର୍ଶନ ଓ ଅଭିଜ୍ଞତା

ଏନ୍ତୁଡ଼ିଶାଳରୁ ସମାଧି ପର୍ଯ୍ୟନ୍ତ ଦୁଃଖର ପ୍ରତୀକ 'କ୍ରନ୍ଦନ' ମନୁଷ୍ୟର ସହଚର ହୋଇଥାଏ । କ୍ରନ୍ଦନଧ୍ୱନିରୁ ଭାଷାର ବିକାଶ ହୁଏ, ପ୍ରତିକ୍ଷେପକ୍ରିୟା କ୍ରମଶଃ ଅଭିଜ୍ଞତାରେ ଋଦ୍ଧିମନ୍ତ ହୁଏ ମାନବର ବୃଦ୍ଧି ଓ ବିକାଶ ସହ ତାଳଦେଇ । କିନ୍ତୁ ଦୁଃଖର ପ୍ରାକୃତିକ ଆଧାରରୁ ମାନବ ସୁଖ ଆଡ଼କୁ ପ୍ରଧାବିତ ହେବା ପାଇଁ ପ୍ରୟାସ କରି କରି ନିରାଶ ହୋଇ ଅବଶେଷରେ ସେହି ଆଧାରକୁ ହିଁ ଆଶ୍ରୟ କରିଥାଏ । ଦୁଃଖ, ଯନ୍ତ୍ରଣା, କ୍ଲେଶ ଜୀବନର କାହାଣୀକୁ ବଳିଷ୍ଠ କରେ । ଲକ୍ଷ୍ୟବସ୍ତୁର ଅପ୍ରାପ୍ତିଜନିତ କ୍ଷୋଭ, ହତାଶା ଓ ଦ୍ୱନ୍ଦ୍ୱ ମଧ୍ୟରେ ଅଭିଜ୍ଞତାର ପୁନର୍ଗଠନ ନିରବଚ୍ଛିନ୍ନ ଥାଏ । ଭୋଗ ନୁହେଁ ତ୍ୟାଗ ହିଁ ପ୍ରକୃତ ମାନବିକ ଆଦର୍ଶ । ଭୋଗଲିପ୍ସୁ ବ୍ୟକ୍ତି ପ୍ରତାରକ ଭାବରେ ସମାଜଦ୍ୱାରା ଲାଞ୍ଛିତ ହୁଏ । କିନ୍ତୁ ଭାରତୀୟ ସମାଜ କେବେ ତ୍ୟାଗୀମାନଙ୍କୁ ଅସମ୍ମାନିତ କରିନାହିଁ । ତ୍ୟାଗର ମହତ୍ତ୍ୱ ମହାଭାରତର ଭୀଷ୍ମ ଓ ରାମାୟଣର ରାମଚନ୍ଦ୍ର, ଭରତ ଓ ଲକ୍ଷ୍ମଣଙ୍କ ଠାରୁ ଶିକ୍ଷାଲାଭ କରିଛି ଏହି ଭାରତୀୟ ସମାଜ । ଆଚାର୍ଯ୍ୟେ ଥିଲେ ତ୍ୟାଗର ଏକ ମୂର୍ତ୍ତିମନ୍ତ ଦୃଷ୍ଟାନ୍ତ । ଆଚାର୍ଯ୍ୟ ହରିହର ଜଣେ ଦାର୍ଶନିକ ନଥିଲେ । ସେ ଭାବୁକ ମଧ୍ୟ ନଥିଲେ । ତାଙ୍କର ଗୁରୁ ଗୋପବନ୍ଧୁଙ୍କର ପ୍ରତ୍ୟେକଟି ଉପଦେଶ ଓ ବାଣୀକୁ ଅକ୍ଷରେ ଅକ୍ଷରେ ସେ ପାଳନ କରି ନିରଳସ ଭାବରେ ସାମାଜିକ ସେବାରେ ନିଜକୁ ଉତ୍ସର୍ଗୀକୃତ କରିଥିଲେ । ଏହି ଉତ୍ସର୍ଗୀକୃତ ଜୀବନର ମହାମନ୍ତ୍ର ଥିଲା ''ମାନବ ଜୀବନ ନୁହଇଁ କେବଳ ବର୍ଷ ମାସ ଦିନ ଦଣ୍ଡ; କର୍ମେ ଜିଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।'' ''ପରୋପକାରାୟ ସ୍ୱର୍ଗାୟ'' ଥିଲା ତାଙ୍କର ଦର୍ଶନ ଓ ଅଭିଜ୍ଞତା ଥିଲା ଅନେକ । ବିଶେଷତଃ ସେ ଶିକ୍ଷକତା କରିବାକୁ ପସନ୍ଦ କରୁଥିଲେ ।

ହରିହର ଥିଲେ ସାର୍ଥକନାମା ମହାପୁରୁଷ । ତାଙ୍କର ଚିନ୍ତାଧାରା ଓ କ୍ରିୟାକଳାପ ଆଦିରେ ପରିସ୍ଫୁଟ ହେଉଥିଲା ତାଙ୍କ ନାମର ମାହାତ୍ମ୍ୟ । 'ହରି'ର ଅର୍ଥ ବିଷ୍ଣୁ, ଯିଏ

'ତାରଣହାର' ସମସ୍ତଙ୍କ ଦୁଃଖ ହରଣ କରନ୍ତି, ପ୍ରତିପୋଷଣ କରନ୍ତି । 'ହର'ର ଅର୍ଥ ଯିଏ ବିନାଶ କରନ୍ତି, ମହାଦେବ, ରୁଦ୍ର । ବାସ୍ତବରେ ହରିହର ଥିଲେ ଦୀନଦୁଃଖୀଙ୍କ ପାଇଁ ହରି ଓ କୁସଂସ୍କାର ତଥା ସ୍ୱାର୍ଥାନ୍ୱେଷୀଙ୍କର ସ୍ୱାର୍ଥ ଓ କୁସଂସ୍କାରକୁ ବିନାଶ କରୁଥିବା ମହାନ୍ ଗୁରୁ । ଯେଉଁ ସିଦ୍ଧିପ୍ରାପ୍ତି ହେବା ପାଇଁ ଯୋଗୀଋଷିଗଣ ସମାଜ ପରିତ୍ୟାଗ କରି ଏକାକୀ ସାଧନା କରି ମଧ୍ୟ ତତ୍‌ସିଦ୍ଧି ପାଇ ପାରନ୍ତିନାହିଁ, କର୍ମଯୋଗୀ ଏକନିଷ୍ଠ ସାଧକ ଆଚାର୍ଯ୍ୟ ହରିହର ସମାଜ ମଧ୍ୟରେ ଅବସ୍ଥାନ କରି ମଧ୍ୟ ସେହି ସିଦ୍ଧି ପ୍ରାପ୍ତ ହୋଇଥିଲେ । ଜନମାନସରେ ଏକ ସମ୍ମାନଜନକ ସ୍ଥାନ ହାସଲ କରିବା ଯେ କୌଣସି ଅଣିମା ଲଘିମା ଆଦି ଅଷ୍ଟସିଦ୍ଧିଠାରୁ ମହତ୍ତର । ଜଣେ ସିଦ୍ଧପୁରୁଷ ହୋଇ ମଧ୍ୟ ଦିଗ୍‌ଦର୍ଶକ ହୋଇନପାରେ । ଉପଯୁକ୍ତ ଦିଗ୍‌ଦର୍ଶକ ଓ ସିଦ୍ଧପୁରୁଷ ଏକାଧାରରେ ହେବା ଅତ୍ୟନ୍ତ ସୌଭାଗ୍ୟ ଓ ପ୍ରାରବ୍ଧ ସଂସ୍କାରର ଫଳ । ସେ ଥିଲେ ଗୀତା ବର୍ଣ୍ଣିତ ସ୍ଥିତପ୍ରଜ୍ଞ ଋଷି । ସ୍ଥିତପ୍ରଜ୍ଞଙ୍କର ସମସ୍ତ ଲକ୍ଷଣ ତାଙ୍କ ପାଖରେ ବିଦ୍ୟମାନ ଥିଲା ।

ହରିହର ଆଜନ୍ମ ନିର୍ଭୀକ ନଥିଲେ । ସେ ବାଲ୍ୟକାଳରେ ଭୀଷଣ ଡରକୁଳା ଥିଲେ । ଥରେ ବର୍ଷଣମୁଖର ଏକ ରାତ୍ରିରେ ତାଙ୍କର ବାହାରକୁ ଯିବା ଏକାନ୍ତ ଆବଶ୍ୟକ ହୋଇ ପଡ଼ିଲା । ତଲବକୁ କ'ଣ ଉପେକ୍ଷା କରିହୁଏ । କାହାର ସହାୟତା ବିନା ହରିହର ଅଣନିଃଶ୍ୱାସୀ ହୋଇ ବାହାରକୁ ଛୁଟିଗଲେ । ସେ ସମୟରେ ଆଉ ଡରଭୟର ପ୍ରଶ୍ନ ନଥାଏ । ମାତ୍ର ଫେରନ୍ତା ବାଟରେ ସେ ଦେଖିଲେ କେହି ଜଣେ ସ୍ତ୍ରୀଲୋକ କାଚ ରୁଣୁଝୁଣ କରି ଦୁଆର ଲିପୁଛି । ବାଳକ ହରିହର ଖୁବ୍ ଡରିଗଲେ । ତାଙ୍କର ଧାରଣା ହେଲା କାଚ ରୁଣୁଝୁଣୁ କରୁଥିବା ମିହଳାଟି ନିଶ୍ଚୟ ତାଙ୍କର ଗ୍ରାମ ଠାକୁରାଣୀ । ହରିହର ଚିତ୍କାର କରି ଘରକୁ ଦଉଡ଼ିଗଲେ । ହରିହରଙ୍କ ଚିତ୍କାର ଶୁଣି ତାଙ୍କର ବୁଢ଼ୀମା ଭାବିଲେ ତାଙ୍କର ନାତିକୁ ପଇଡ଼ାଇ କିଆବଣରୁ ଚିତାବାଘ ଆସି ନେଇଯାଉଛି । ବୁଢ଼ୀମା ମଧ୍ୟ ଚିତ୍କାର କଲେ 'ବାଘ ନେଇଗଲା, ବାଘ ନେଇଗଲା ।' ହଠାତ୍ ନିଦ୍ରାଭଙ୍ଗ ହେଲା ମହାଦେବ ବ୍ରହ୍ମାଙ୍କର । ସବୁ କଥା ବୁଝିସାରିବା ପରେ ହରିହରଙ୍କୁ ପ୍ରବୋଧନା ଦେଇ ପିତା ବୁଝାଇ ଦେଲେ ''ଠାକୁରାଣୀ ସମସ୍ତଙ୍କର ମା' । ମା' ରକ୍ଷା କରେ; ବିପଦର କାରଣ ହୁଏ ନାହିଁ ।'' ''କୁପୁତ୍ରୋ ଜାୟତେ କ୍ୱଚିଦପି ମାତା କୁମାତା ନ ଭବତି ।''

ପୁତ୍ର କୁପୁତ୍ର ହୋଇପାରେ ମାତ୍ର ମାତା କେବେ କୁମାତା ହୋଇପାରେନା । ସେହି ଦିନଠାରୁ ହରିହରଙ୍କର ଦେବୀପ୍ରୀତି ବୃଦ୍ଧି ପାଇଲା ଓ ତାଙ୍କର ଭୟ ଦୂର ହୋଇଗଲା । ହରିହର ଜାଣିଥିଲେ ଯେ ଲଜ୍ଜା, ଭୟ ଓ ଘୃଣାକୁ ନେଇ ଉଚ୍ଚାକାଂକ୍ଷୀ ବ୍ୟକ୍ତି ଅଧିକ ଉନ୍ନତି କରିପାରେ ନାହିଁ ।

ସେତେବେଳେ ଇଂରେଜ ଶାସନରେ ଭାରତୀୟମାନେ ଅତିଷ୍ଠ ହୋଇ ପଡୁଥାନ୍ତି । ଧର୍ମାନ୍ତରୀକରଣ, ଭାଷାନ୍ତରୀକରଣ ନିମିତ୍ତ ପ୍ରବଳ ଉଦ୍ୟମ ଚାଲିଥାଏ । ଅଧା-ବିଲାତୀଙ୍କର ପରାକ୍ରମ ଯିଏ ଅଙ୍ଗେ ନିଭେଇଛି ସିଏ ଜାଣିଛି । ଇଂରାଜୀ ପଢ଼ିଲେ 'ଭଲ ଚାକିରି ମିଳିବ, କ୍ଷମତା ମିଳିବ' ଏହି ଧାରଣା ରଖି ଲୋକେ ରାତାରାତି ଖଦଡ଼ ଫିଙ୍ଗି କୋଟ୍‌ଟାଇ ପିନ୍ଧିବାର ଅଭ୍ୟାସ କରୁଥା'ନ୍ତି । ସେତେବେଳେ ଓଡ଼ିଆଙ୍କ କଥା ପଚାରେ କିଏ ? ଏ ସଂପର୍କରେ ସୂଚନା ସେ ନିଜର ଆତ୍ମଲିପିରେ ପ୍ରଦାନ କରିଛନ୍ତି । ''୧୮୯୩-୯୪ ମସିହାବେଳକୁ ପାଶ୍ଚାତ୍ୟ ସଭ୍ୟତାର ଖରସ୍ରୋତ ଉତ୍କଳର ପୁରପଲ୍ଲୀକୁ ପ୍ଲାବିତ କରିପାରି ନଥିଲେ ସୁଦ୍ଧା ଆମ ଗାଁରେ କେତେକ ପରିମାଣରେ ପ୍ରବେଶ କରିଥିଲା । ଇଂରାଜୀ ଶିକ୍ଷା ପ୍ରତି ଅଭିଭାବକମାନଙ୍କର ମନ କ୍ରମଶଃ ଆକୃଷ୍ଟ ହୋଇ ଆସୁଥିଲା । ଇଂରାଜୀ ପାଠ ପଢ଼ି ପ୍ରଭୂତ ଅର୍ଥ ଓ କ୍ଷମତା ଉପାର୍ଜନ କରିବାର ଉଦାହରଣ ସେମାନେ ଦେଖୁଥିଲେ । ଯେଉଁମାନେ ଇଂରେଜୀ ଚାରି ଅକ୍ଷର ପଢୁଥିଲେ, ସେମାନଙ୍କର ଆଚାର ବ୍ୟବହାର, ସ୍ୱାଚ୍ଛନ୍ଦ୍ୟ, ବେଶଭୂଷାର ପରିପାଟୀ, ନାମମାତ୍ର ଲଜ୍ଜାନିବାରକ ବିଦେଶୀ ବସ୍ତ୍ର ପରିଧାନ ଓ କଥାବାର୍ତ୍ତାର ପ୍ରଗଲ୍‌ଭତା ଦେଖି ବାଳକମାନେ ଭବିଷ୍ୟତ୍ ସୁଖ-କଳ୍ପନା କରୁଥିଲେ । ଯାହା ବିଦେଶୀ ତାକୁ ସଭ୍ୟତା ବୋଲି ମନେକରି ସ୍ୱଦେଶୀ ଭାବନାକୁ ଅସଭ୍ୟତା ବୋଲି କହିବାକୁ ଶିଖୁଥିଲେ । ଏହି ସମୟରେ ଇଂରେଜୀ ପାଠ ପଢ଼ିବା ପାଇଁ ନୀଳାଚଳ ଧାମକୁ ଆସିଲି ।''

ସ୍ୱାଧୀନପୂର୍ବ ପୁରୀ ଏକ ତୀର୍ଥକ୍ଷେତ୍ର ଥିଲା ସତ କିନ୍ତୁ ଯାତ୍ରୀମାନଙ୍କର ସୁବିଧା ଅସୁବିଧା ପାଇଁ ଆଜିପରି ପର୍ଯ୍ୟାପ୍ତ ବ୍ୟବସ୍ଥା ନଥିଲା । ଉକ୍ତ ଯାତ୍ରୀବୃନ୍ଦ ଭାରତର ବିଭିନ୍ନ ପ୍ରାନ୍ତରୁ ପୁରୀକୁ ଆସି ଅକଥନୀୟ ଦୁର୍ଦ୍ଦଶାର ସମ୍ମୁଖୀନ ହେଉଥିଲେ । ଯାତ୍ରୀମାନଙ୍କ ପାଇଁ ପାନୀୟଜଳର ଘୋର ଅଭାବ ଥିଲା । ଏବେ ମ୍ୟୁନିସିପାଲିଟି

ପାନୀୟ ଜଳ ଯୋଗାଣ ପାଇଁ ବହୁ ସୁନ୍ଦର ବ୍ୟବସ୍ଥା କରିଛନ୍ତି । ପୁଣି ଖାଦ୍ୟ, ଆବାସ ଓ ପରିଚ୍ଛନ୍ନତା ମଧ୍ୟ ସହଜ ଉପଲବ୍ଧ ନଥିଲା । ଯାତ୍ରୀମାନେ ଦୂରଦୂରାନ୍ତରୁ ଆସି ବିସୂଚିକା, ହଇଜା ଓ ଆମାଶୟ ଆଦି ଉଦର ରୋଗରେ ସହଜରେ ଆକ୍ରାନ୍ତ ହୋଇ ପଡୁଥିଲେ । ସେମାନଙ୍କୁ ସ୍ୱାସ୍ଥ୍ୟସେବା ଯୋଗାଇଦେବା ପାଇଁ ଉପଯୁକ୍ତ ବ୍ୟବସ୍ଥା ନଥିଲା । ଭକ୍ତମାନଙ୍କର ସେବା ପାଇଁ ଭଗବାନ ସତେ ଯେପରି ହରିହର ରୂପରେ ଅବତୀର୍ଣ୍ଣ ହୋଇଥିଲେ । ନିଜର ସାମର୍ଥ୍ୟ ଅନୁସାରେ ସେବକ ବାହିନୀ ଗଠନ କରି ହରିହର ଦୁର୍ଦ୍ଦଶାଗ୍ରସ୍ତ ଯାତ୍ରୀମାନଙ୍କର ସେବା କରୁଥିଲେ । ସେମାନଙ୍କୁ ପାନୀୟଜଳ ଯୋଗାଇଦେବା ସଙ୍ଗେ ସଙ୍ଗେ ରୋଗଗ୍ରସ୍ତ ଯାତ୍ରୀମାନଙ୍କୁ ସାମର୍ଥ୍ୟ ଅନ୍ତର୍ଗତ ଖାଦ୍ୟ ପ୍ରଦାନ, ଔଷଧ ଓ ପଥ୍ୟ ପ୍ରଦାନ କରି ଉପଯୁକ୍ତ ଜାଗାରେ ପହଞ୍ଚାଇ ଦେଉଥିଲେ ।

ହରିହରଙ୍କ ପରି ସତ୍ୟପ୍ରିୟ, ଉଦାର, ନୀତିନିଷ୍ଠ ବ୍ରାହ୍ମଣ ସନ୍ତାନ ଯେ କୁସ୍ତିକସରତ ପାଇଁ ଆଗ୍ରହୀ ଥିଲେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । 'ଶରୀର ମାଦ୍ୟଂ ଖଳୁ ଧର୍ମ ସାଧନମ୍'’ରେ ତାଙ୍କର ମଧ ବିଶ୍ୱାସ ଥିଲା । ଉତ୍ତମ ସ୍ୱାସ୍ଥ୍ୟର ଅଧିକାରୀ ନିଶ୍ଚିତ ଭାବରେ ସୁସ୍ଥମନା ହୋଇଥାଏ । ସ୍ୱାସ୍ଥ୍ୟବିଜ୍ଞାନ ସମ୍ବନ୍ଧରେ ଜ୍ଞାନ ଲାଭ କରି ନିଜର ଶରୀର ସୁସ୍ଥ ନ ରଖିଲେ ଅସୁସ୍ଥ ଓ ଦୁଃସ୍ଥଜନର ସେବା କିଭଳି କରିହେବ ? ଏହି ଯୁକ୍ତିକୁ ଆଧାର କରି ହରିହର ନିଜକୁ ସର୍ବଦା ସୁସ୍ଥ, ସବଳ ଓ କର୍ମଠ ରଖିବା ପାଇଁ ପ୍ରଯତ୍ନ କରି ଆସୁଥିଲେ । ଏଥିପାଇଁ ସେ କିଛି ସଙ୍ଗୀମାନଙ୍କ ସହ ପ୍ରତ୍ୟହ କୁସ୍ତିକସରତ କରୁଥିଲେ । ସମାଜସେବା ଓ କୁସ୍ତିକସରତ କରିବା ସହ ସେ ନିଜର ପାଠପଢ଼ାରୁ କେବେ ବିରତ ହୋଇନାହାନ୍ତି । ତାଙ୍କର ଗଭୀର ମନୋନିବେଶ, ଆଗ୍ରହପୂର୍ଣ୍ଣ ଅଧ୍ୟୟନ ଯୋଗୁଁ ସେ ଶ୍ରେଣୀରେ ସର୍ବଦା ପ୍ରଥମ ହୋଇ ଆସୁଥିଲେ । ତେଣୁ ସମାବର୍ତ୍ତନ ଉତ୍ସବରେ ହରିହର ପ୍ରଚୁର ପୁରସ୍କାର ପାଉଥିଲେ ।

ମନସ୍ତତ୍ତ୍ୱ ସଂପର୍କୀୟ ବିଶଦ ଜ୍ଞାନ ନଥାଇ ମଧ ହରିହର ଥିଲେ ଅଦ୍ୱିତୀୟ ଛାତ୍ର ମନସ୍ତତ୍ତ୍ୱବିତ୍ । ନୀଳଗିରିରୁ ଫେରି କିଛି ଦିନ କଟକ ମିସନ୍ ସ୍କୁଲରେ ରହିବା ପରେ ସେ ପ୍ୟାରୀମୋହନ ଏକାଡେମୀରେ ଦୀର୍ଘ ପାଞ୍ଚବର୍ଷ କାଳ ଶିକ୍ଷକତା କରିଥିଲେ । ପ୍ୟାରୀମୋହନ ଏକାଡେମୀରେ ଛାତ୍ରମାନେ ବହୁ ଅମନୋଯୋଗୀ

ଥିଲେ । ଏହା ୧ ୯ ୦ ୬ ମସିହାର କଥା । ହରିହର ଥିଲେ ଜଣେ ସଫଳ ଗଣିତ ଶିକ୍ଷକ । ସେ ଉତ୍ତମ ରୂପେ ବୁଝିଥିଲେ ଯେ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମସ୍ତ ଛାତ୍ର ରୁଚି, ମେଧା, ବୟସ ଓ ବୋଧଶକ୍ତି ଅନୁସାରେ ଭିନ୍ନ ଭିନ୍ନ ଅଟନ୍ତି । ତେଣୁ ସମସ୍ତ ପିଲା ଯେପରି ବିଷୟବସ୍ତୁଟିକୁ ପୁଙ୍ଖାନୁପୁଙ୍ଖ ହୃଦୟଙ୍ଗମ କରିପାରିବେ ସେଥିପ୍ରତି ଯଥେଷ୍ଟ ପ୍ରଯତ୍ନଶୀଳ ହୋଇ ହରିହର ଶିକ୍ଷାଦାନ ଦେଉଥିଲେ । ଶ୍ରେଣୀ କକ୍ଷରେ ପ୍ରତି ପିଲାଙ୍କ ଉପରେ ଦୃଷ୍ଟି ପଡ଼ିବା ଉଚିତ ବୋଲି ଭାବି ସେ କେବେ ଚଉକିରେ ବସୁନଥିଲେ । ଛାତ୍ରଛାତ୍ରୀମାନଙ୍କର ବ୍ୟକ୍ତିଗତ ଅସୁବିଧାକୁ ମଧ୍ୟ ଧ୍ୟାନ ଦେଉଥିଲେ । ଏଥିପାଇଁ ତାଙ୍କୁ ରାତ୍ରି ଦୁଇଟାରୁ ଉଠି ଚାରିଟା ସୁଦ୍ଧା ନିତ୍ୟକର୍ମ ତୁଟାଇବାକୁ ପଡୁଥିଲା । ୪ଟା ଠାରୁ ୭ଟା ଭିତରେ ଛାତ୍ରମାନଙ୍କର ଦତ୍ତକର୍ମ ସୁଧାରଣ ଓ ସଂଶୋଧନ କରି ଆବଶ୍ୟକ ଉପଦେଶ ଓ ଅନୁଦେଶନ ପ୍ରଦାନ ଲିଖିତ ଭାବେ ପ୍ରସ୍ତୁତ କରି ସାରିବା ପରେ ଜଳଖିଆ ଖାଉଥିଲେ । ପାଳିକରି ପ୍ରତ୍ୟେକ ଛାତ୍ର ଓ ସେମାନଙ୍କର ଅଭିଭାବକମାନଙ୍କର ସଂସ୍ପର୍ଶରେ ଆସୁଥିଲେ । ଏହା ମଧ୍ୟ ତାଙ୍କର ନିତ୍ୟକର୍ମ ଅନ୍ତର୍ଭୁକ୍ତ ଥିଲା । ତେଣୁ ହରିହର ଛାତ୍ର ଓ ଅଭିଭାବକ ମହଲରେ ଅତ୍ୟନ୍ତ ପ୍ରିୟପାତ୍ର ହୋଇପଡ଼ିଥିଲେ । ସେ ଦଣ୍ଡ ପ୍ରଦାନର ପକ୍ଷପାତୀ ନଥିଲେ । ଉପଦେଶନ, ଅନୁଦେଶନ, ଦୃଷ୍ଟାନ୍ତ ଓ କୋମଳ ବ୍ୟବହାର ଦ୍ୱାରା ବିପଥଗାମୀ ଛାତ୍ରମାନଙ୍କୁ ସୁଧାର କରିପାରୁଥିଲେ । ହରିହରଙ୍କ ପରି ଆଚରଣ ସଂଶୋଧକଙ୍କ ଦୃଷ୍ଟାନ୍ତ ଆଜିର ଶିକ୍ଷକ ସମାଜରେ ବିରଳ । ସେ ସହଜରେ ଗାଳି ଦେଉନଥିଲେ । ସେତିକି ଜରୁରୀ ମନେକଲେ 'ଅସଭ୍ୟ' ବୋଲି ଏକ ପଦ ଗାଳି ଭାବରେ ବ୍ୟବହାର କରୁଥିଲେ । କି ଯାଦୁକରୀ ଶକ୍ତି ଥିଲା ଏହି ପଦଟିରେ କେଜାଣି ହରିହରଙ୍କର ଛାତ୍ରମାନେ ଏହି ବିଶେଷଣଠାରୁ ନିଜକୁ ଯଥେଷ୍ଟ ବ୍ୟବଧାନରେ ରଖିବା ପାଇଁ ଚେଷ୍ଟା କରୁଥିଲେ ।

ଛାତ୍ରମାନଙ୍କୁ ନୈତିକ ମାର୍ଗ ଦର୍ଶନ କରିବାରେ ହରିହର ଥିଲେ ଅଗ୍ରଣୀ । ସେଥିପାଇଁ ସେ ନିଜର ଆଚରଣକୁ ଯଥାସମ୍ଭବ ମାର୍ଜିତ ଓ ନୀତିନିଷ୍ଠ କରିବାକୁ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ନିଜର ସହକର୍ମୀମାନଙ୍କଠାରୁ ଅନୁରୂପ ଅଭ୍ୟାସ ଆଶା କରୁଥିଲେ ।

ଥରେ ପ୍ୟାରୀମୋହନ ଏକାଡେମୀରେ ଛାତ୍ରମାନଙ୍କର କ୍ରୀଡ଼ାସାମଗ୍ରୀ କ୍ରୟ କରିବା ପାଇଁ ପ୍ରସ୍ତାବ ଥାଏ । କିନ୍ତୁ ଅର୍ଥାଭାବ ହେତୁ ଏହି ପ୍ରସ୍ତାବଟି କାର୍ଯ୍ୟକାରୀ ହୋଇପାରୁନଥାଏ । କିଛି ଶିକ୍ଷକ ଲଟେରି ବ୍ୟବସ୍ଥା କରି ଅର୍ଥ ସଂଗ୍ରହ କରିବାକୁ ପ୍ରସ୍ତାବ ରଖିଲେ । ଯେତେବେଳେ ଏହି ପ୍ରସ୍ତାବ ହରିହରଙ୍କ ଗୋଚରକୁ ଆସିଲା ସେ ଏଥିରେ ସଂପୂର୍ଣ୍ଣ ବିରକ୍ତି ପ୍ରକାଶ କଲେ । ତାଙ୍କ ମତରେ 'ଲଟେରି' ଏକ ଜୁଆଖେଳ । ଏ ପ୍ରକାରର କୁଅଭ୍ୟାସଠାରୁ ଛାତ୍ରମାନଙ୍କୁ ଯଥାସମ୍ଭବ ଦୂରରେ ରଖାଯିବା ଉଚିତ । ପରବର୍ତ୍ତୀ ପର୍ଯ୍ୟାୟରେ ହରିହରଙ୍କର ମତ ହିଁ ରହିଥିଲା । ଲଟେରି ମାଧ୍ୟମରେ ଅର୍ଥ ଉପାର୍ଜନ ପରି ଦୁରଭ୍ୟାସ ଓ କୁଚିନ୍ତା ସମସ୍ତଙ୍କଠାରୁ ଦୂରେଇ ଯାଇଥିଲା ।

ଶ୍ରେଣୀରେ ପିଲାମାନଙ୍କୁ ପାଠପଢ଼ାଇବାର ଏକ ପ୍ରଧାନ ଉପକରଣ ହେଉଛି ପାଠ୍ୟପୁସ୍ତକ । ଏଗୁଡ଼ିକ ଚରିତ୍ର ଗଠନରେ ସହାୟକ ହେବା ଉଚିତ ବୋଲି ହରିହର ମତ ପ୍ରଦାନ କରୁଥିଲେ । ଯଦି ଗଣିତ ପୁସ୍ତକରେ ଗଉଡ଼ ତିନିଲିଟର କ୍ଷୀରରେ ଦୁଇ ଲିଟର ପାଣି ମିଶାଇଲା ବୋଲି ଉଦାହରଣ ଦେଇ ଅଙ୍କ କଷାଯାଉଥାଏ ଏହା ଛାତ୍ରମାନଙ୍କର ନୈତିକ ପ୍ରଗତିର ମାର୍ଗକୁ ଅବରୁଦ୍ଧ କରିପାରେ ବୋଲି ହରିହରଙ୍କର ଧାରଣା ଥିଲା । ଠିକ୍ ସେହିପରି ସାହିତ୍ୟ ବହିରେ କାଞ୍ଚିରାଜା ପଦ୍ମାବତୀର ବିବାହ ପ୍ରସଙ୍ଗ ନଦେଇ କିମ୍ବା ରୁକ୍ମିଣୀ ସ୍ୱୟମ୍ବର ପ୍ରସଙ୍ଗ ନଦେଇ ମହାପୁରୁଷ କିମ୍ବା ବୈଜ୍ଞାନିକମାନଙ୍କ ଜୀବନର ଚମତ୍କାର ଘଟଣାବଳୀ ସଂପର୍କରେ ଚର୍ଚ୍ଚା ଦିଆଯିବା ଉଚିତ ବୋଲି ସେ ମତ ବ୍ୟକ୍ତ କରୁଥିଲେ ।

ଆଚାର୍ଯ୍ୟ ହରିହର ଥିଲେ ଗାନ୍ଧୀ ଶିକ୍ଷାନୀତିର ପକ୍ଷପାତୀ ଓ ଦୃଢ଼ ସମର୍ଥକ । ଆଚାର୍ଯ୍ୟ ମହାଶୟ ଗୋପବନ୍ଧୁ ଭବନରେ ଅବସ୍ଥାନ କରୁଥିବା ସମୟରେ 'ହଲିଡେ ହୋମ' କ୍ୟାମ୍ପରେ ଥିବା ସତୁରି ଜଣ ଛାତ୍ରଛାତ୍ରୀ ଆଚାର୍ଯ୍ୟ ହରିହରଙ୍କ ଆଶୀର୍ବାଦ ପାଇବା ପାଇଁ ଗଲେ । ପିଲାମାନେ ପହଞ୍ଚି ପ୍ରଣାମ କରିବା ପରେ ସେମାନଙ୍କୁ ଆଶୀର୍ବାଦ ଦେବାପାଇଁ ଯାଇ ହରିହର କହିଥିଲେ ''ପିଲାମାନେ, ତୁମେ ସବୁ ଭବିଷ୍ୟତରେ କ'ଣ ହେବ ଓ କ'ଣ କରିବ ସେଥିପାଇଁ ମୁଁ ବିଶେଷ ଚିନ୍ତିତ । ଆଜି ଶିକ୍ଷାକ୍ଷେତ୍ର ଯାହା ହୋଇଛି ଭାବିଲା ବେଳକୁ ମର୍ମାହତ ହେବାକୁ ହୁଏ । ତମମାନଙ୍କ

ଉପରେ ଯେଉଁ ଶିକ୍ଷା ଲଦି ଦିଆଯାଉଛି ତାର ପରିଣାମ ଭଲ ବୋଲି ମନେ ହେଉ ନାହିଁ । ଗାନ୍ଧିଜୀଙ୍କ କଥା ଓ ଶିକ୍ଷାନୀତି କେହି ମାନିଲେ ନାହିଁ । ଶିକ୍ଷା ମଣିଷକୁ ମଣିଷ ପରି ଗଢ଼ିବା କଥା, ତା'ତ ଏ ପର୍ଯ୍ୟନ୍ତ ହେଲା ନାହିଁ । ସେଇସବୁ ବିଶ୍ୱବିଦ୍ୟାଳୟ କୋଡ଼ି-କାଙ୍କର ବିଶ୍ୱବିଦ୍ୟାଳୟ ହେଉ, ସେ କଥା କାହା ମୁଣ୍ଡରେ ପଶୁନି । ଗୁରୁଜୀମାନଙ୍କ ସଙ୍ଗେ ଛାତ୍ରଛାତ୍ରୀଙ୍କର ଉତ୍ତମ ସଂପର୍କ ରହିପାରିନାହିଁ । ଏସବୁ ଦିଗରେ ନଜର ଦେଇ ଭଲ ମଣିଷ ହେବାପାଇଁ ପିଲାମାନେ ଚେଷ୍ଟା କରିବ । ଜଗନ୍ନାଥ ତୁମମାନଙ୍କର ମଙ୍ଗଳ କରନ୍ତୁ । ତମେ ସବୁ ଭଲ ମଣିଷ ହୋଇ ତମ ଗାଁମାନଙ୍କର ଉନ୍ନତି କର, ଏହାହିଁ ପ୍ରଭୁଙ୍କଠାରେ ମୋର କାମନା ।''

କ୍ରନ୍ଦନରୁ ହିଁ ଅନୁକୂଳ ହୁଏ ଜୀବନ ବଜାରର ସଉଦା । କ୍ରନ୍ଦନରେ ହିଁ ଏହାର ପରିସମାପ୍ତି ହୁଏ । ସୁଖପାଇଁ ଭୋଗପାଇଁ ଦୁଃଖରେ ସଞ୍ଚୟ କରୁ କରୁ କ୍ଷଣସ୍ଥାୟୀ ଜୀବନ ସରି ସରି ଯାଏ । କରୁଣ ଓ ବୀଭତ୍ସରସରେ ଭରପୂର ଏ ଜୀବନ । ଏ ଭିତରେ ନିଜ ପାଇଁ ଓ ଅନ୍ୟ ପାଇଁ ହାସ୍ୟରସ ସୃଷ୍ଟି କରୁଥିବା ସ୍ରଷ୍ଟା କେତେ ମହାନ୍ ସତେ ! ଜଣେ ବ୍ୟକ୍ତିକୁ ଦୁଃଖୀ କରେଇବା ଅତି ସହଜ । କିନ୍ତୁ ଲୋତକ ପୋଛିଦେଇ ହସ ଫୁଟାଇବା ବ୍ୟକ୍ତି ବହୁତ ବିରଳ । ପୀଡ଼ିତ, ରୁଗ୍ଣ ବ୍ୟକ୍ତିମାନଙ୍କର ସେବା କରି ସେମାନଙ୍କୁ ଆଶ୍ୱାସନା ଦେଇ ହରିହର ସେମାନଙ୍କ ପୀଡ଼ାହରଣ କରିବାରେ ଯେପରି ସିଦ୍ଧହସ୍ତ ଥିଲେ, ସନ୍ତପ୍ତ ବ୍ୟକ୍ତି ମୁଖରେ ହାସ୍ୟର ଅରୁଣିମା ଖେଳାଇବାରେ ସେପରି ଦକ୍ଷ ଥିଲେ । ଅବିନ୍ୟସ୍ତ ଶ୍ମଶ୍ରୁଭରା ଉଜ୍ଜ୍ୱଳ ମୁଖମଣ୍ଡଳ ଭିତରେ ଭରି ରହିଥିବା ହାସ୍ୟରସ ଅବିଶ୍ୱାସନୀୟ ହେଲେ ବି ବ୍ୟଙ୍ଗ ସୃଷ୍ଟି କରିବା ହରିହରଙ୍କର ଏକ ସହଜାତ ଗୁଣ ଥିଲା । 'ସଙ୍ଗୀତ ଶିକ୍ଷକଙ୍କର ଘର ପୋଡ଼ିଯିବା ବିଷୟରେ ଛାତ୍ରଟି ତାଳମାନ ଲୟରେ ବର୍ଣ୍ଣନା କରୁ କରୁ ସେପଟେ ପଣ୍ଡିତଙ୍କର ଘର ପୋଡ଼ି କିପରି ଭସ୍ମସାତ୍ ହୋଇଗଲା' କଥାଟି ସେ ଯେତେବେଳେ ରହସ୍ୟ କରି କୁହନ୍ତି ସେତେବେଳେ ଉଛୁଳି ଆସୁଥିବା ହାସ୍ୟରସକୁ ସେହି ବେରସିକତାର ଆବରଣ ତଳୁ ବେଶ୍ ବୁଝିହୁଏ । ରହସ୍ୟର ଖଣି ନୀଳଗିରିର କୈଳାସବାବୁ ଓ ଆଚାର୍ଯ୍ୟ ହରିହର ଯଦି ଏକାଠି ବସିଗଲେ ସେଠାରେ ପାଲାମଞ୍ଚ ଚାରିପାଖେ ଶ୍ରୋତା ଜମିଗଲା ପରି ଅନେକ ରସପ୍ରିୟ ଶ୍ରୋତା

ଜମିଯାଆନ୍ତି । ତାଙ୍କର ବୌଦ୍ଧିକ ବ୍ୟଙ୍ଗ ପ୍ରତି ମଧ୍ୟ ସମସ୍ତଙ୍କର ଭୟ ଥାଏ । ତାଙ୍କର ବ୍ୟଙ୍ଗରେ ଭରି ରହିଥାଏ ଅପ୍ରିୟ ସତ୍ୟ ଓ ଅକାଟ୍ୟ ଯୁକ୍ତି । ସ୍ୱାଧୀନତା ସଂଗ୍ରାମ ବେଳର କଥା, କଟକର ଟାଉନ୍‌ହଲରେ ଗୋଟିଏ ସଭା ହେଉଥାଏ । ଆଚାର୍ଯ୍ୟ ହରିହର ବସିଥାନ୍ତି ପ୍ରଥମ ଚାରିଧାଡ଼ି ପଛରେ । ଖୁବ୍ ଗରମାଗରମ ବକ୍ତୃତା ଚାଲିଥାଏ । ନୂଆ ହୋଇ କମ୍ୟୁନିଷ୍ଟ ପାର୍ଟିରେ ସଭ୍ୟ ହୋଇଥିବା ଜଣେ ଯୁବକ ତାଙ୍କର ବକ୍ତୃତା ମଧ୍ୟରେ ଭଗବାନଙ୍କୁ ଉପହାସ ଓ ସମାଲୋଚନା କରି ଚାଲିଥାନ୍ତି । ହରିହରଙ୍କ ପାଖରେ ବସିଥିବା ଜଣେ ଯୁବକ ତାଙ୍କୁ ପଚାରିଲେ, ‘‘ବ୍ରିଟିଶ୍ ସରକାରଙ୍କୁ ଗାଳି ନଦେଇ ଇଏ ଭଗବାନ୍‌ଙ୍କୁ କାହିଁକି ଏତେ ଗାଳି ଦେଉଛନ୍ତି ?’’ ଯଷ୍ଟି ଖଣ୍ଡିକ ଧରି ଉଠୁ ଉଠୁ ଆଚାର୍ଯ୍ୟ ମହାଶୟ କହିଲେ, ‘‘ଦେଖୁନା, ସେ କଣରେ ବ୍ରିଟିଶ୍ ସରକାରଙ୍କ ପୁଲିସ୍ ବସି ସବୁକଥା ଟିପୁଛି । ଏଠି ବିଚରା ସେହି ଭଗବାନ୍‌ଙ୍କର କେହି ଟିପିଲାବାଲା ନାହାନ୍ତି ବୋଲି ସିଏ ଗାଳି ଖାଉଛନ୍ତି ।’’ ସମସ୍ତେ ହସି ଉଠିଲେ ଓ ସେହି ହସ ଭିତରେ ଆଚାର୍ଯ୍ୟ ମହାଶୟ ସଭା ପରିତ୍ୟାଗ କରି ଚାଲିଯାଇଥିଲେ ।

ପଞ୍ଚସଖା ଏକତ୍ର ଜୁଟିଗଲେ ମେଳିଯାଏ ହସ ତାମସାର ଅଦିନ ପସରା । ଥଟ୍ଟାତାମସା ଓ ରହସ୍ୟରେ କେହି କାହାଠାରୁ ଊଣା ନୁହେଁ । ଯେଉଁ ଛାତ୍ରମାନେ ଏମାନଙ୍କ ଭିତରୁ ଜଣଙ୍କ ସାଙ୍ଗରେ ଯାତ୍ରା ସାଥି ବନିଛନ୍ତି ସେମାନେ ହାସ୍ୟରସର ଅମୃତରେ ଯାତ୍ରାକଷ୍ଟ ଭୁଲିଯାଇଛନ୍ତି, ସେମାନଙ୍କର କ୍ଳାନ୍ତି ଦୂରେଇ ଯାଇଛି । କିନ୍ତୁ ଥଟ୍ଟା ପରିହାସର ସୀମା ଭିତରେ କୌଣସି ବ୍ୟକ୍ତିକୁ ସିଧାସଳଖ ଆକ୍ଷେପ ନକରି ତା ମନରେ କଷ୍ଟ ଦେବା ପରି ରହସ୍ୟ ନକରି ହରିହର ନିଜର ବ୍ୟକ୍ତିତ୍ୱକୁ ମହାନ୍ ବୋଲି ସାବ୍ୟସ୍ତ କରି ପାରିଛନ୍ତି ।

ଏକଦା ରାମଚନ୍ଦ୍ର ଭବନରେ ଜନୈକ ମହାପୁରୁଷଙ୍କ ସ୍ମୃତିରେ ଏକ ସତ୍‌ସଙ୍ଗ ସମ୍ମେଳନର ବ୍ୟବସ୍ଥା ହୋଇଥାଏ । ଜନୈକ ତରୁଣ ଆଧ୍ୟାପକ ସେହି ସଭାର ମୁଖ୍ୟ ବକ୍ତା ଥାଆନ୍ତି । ଦୁଇ ଚାରିଜଣଙ୍କୁ ସାଙ୍ଗରେ ନେଇ ଆଚାର୍ଯ୍ୟ ମହାଶୟ ସେଠାରେ ପହଞ୍ଚିଲେ । ଇଂରାଜୀରେ ଭାଷଣ ଚାଲିଥାଏ । ଭାଷଣ ସରିବା ପରେ ଜଣେ ଶ୍ରୋତା ହରିହରଙ୍କୁ ପଚାରିଲେ, ‘‘ଚମତ୍କାର ଭାଷଣ ହେଲା, ନାହିଁ ?’’ ହରିହର ତତ୍‌କ୍ଷଣାତ୍

ଉତ୍ତର ଦେଲେ, ''ଭାଷଣ ନିଶ୍ଚିତ ଭାବରେ ଭଲ ହେଲା, ଏଥିରେ ଦ୍ୱିମତ ହେବାର କିଛି ନାହିଁ, ତେବେ ଓଡ଼ିଆରେ କହିଥିଲେ ଦେବଦେବୀମାନଙ୍କର ନାମର ଏପରି ବିକୃତ ଉଚ୍ଚାରଣ ହୋଇନଥାନ୍ତା ।'' ଏହି କଥାରେ ସମସ୍ତେ ହସି ଉଠିଥିଲେ ।

ମନୁଷ୍ୟ ମାତ୍ରକେ କ୍ରୋଧ, ଲୋଭ, ମୋହ, ମଦମାତ୍ସର୍ଯ୍ୟର ବଶୀଭୂତ ହେବା ସ୍ୱାଭାବିକ, କାରଣ ଏସବୁ ଆବେଗସମୂହ ମନୁଷ୍ୟର ପ୍ରାକୃତିକ ପ୍ରକାଶ । ସବୁ ଆବେଗକୁ ନିୟନ୍ତ୍ରିତ କରି ନିଜ ବଶରେ ରଖିଥିବା ବ୍ୟକ୍ତି ଜିତେନ୍ଦ୍ରିୟ । ନିଜର ନିଷ୍କଳଙ୍କ ଯୌନ ଚରିତ୍ରର ପରିଚୟ ହରିହର ଅନେକ ସ୍ଥାନରେ ଦେଇଛନ୍ତି । କାମବଶରେ ମୋହିତ ଏ ଜଗତର ପ୍ରତ୍ୟେକ ବ୍ୟକ୍ତି ବାସନା ଚରିତାର୍ଥ ପାଇଁ ସର୍ବଦା ଉଦ୍ୟମରତ ରହିଥାଏ, ପ୍ରତ୍ୟକ୍ଷ ଭାବରେ ହେଉ ବା ପରୋକ୍ଷ ଭାବରେ ହେଉ । କାମର ଅପରିତୃପ୍ତିରେ ଦୁଃଖ, କ୍ଷୋଭ, ହତାଶ ଓ କ୍ରୋଧ ଜାତ ହୋଇଥାଏ । ଏହି ସ୍ୱାଭାବିକ ମାନବିକ ଆବେଗ ହରିହରଙ୍କଠାରେ ଏପରି ନିୟନ୍ତ୍ରିତ ଭାବରେ ରହିଥିଲା ଯେ ସେ ସମସ୍ତର ସାମାନ୍ୟ ସ୍ଖଳିତ ପ୍ରକାଶ କେହି କେବେ ଉପଲବ୍ଧି କରିନାହାନ୍ତି । ଗୋଟିଏ ଉଦାହରଣ ଦିଆଯାଉ– ଏକଦା ଜଣେ ଯୁବକ ହରିହରଙ୍କୁ କହିଲେ, '' ଆପଣ ବଞ୍ଚିଛନ୍ତି ବୋଲି ଆମେ ଆପଣଙ୍କୁ ଆଦର କରିବାକୁ ବାଧ ହେଉଛୁ । ଆମେ ଅପେକ୍ଷା କରିଛୁ ଆପଣଙ୍କ ଅନ୍ତେ କିପରି ଗୋଟିଏ ଶୋକସଭା କଲେ ନିସ୍ତାର ପାଇବୁ ।'' ଏହି କଥାଟି ଶୁଣି ସାରିବା ପରେ ଉପସ୍ଥିତ ଅନ୍ୟ ବ୍ୟକ୍ତିଗଣ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ି ଉକ୍ତ ଯୁବକଙ୍କୁ ଅନ୍ୟତ୍ର ନେଇ ଯାଇଥିଲେ । ହରିହରଙ୍କ ବ୍ୟତୀତ ଅନ୍ୟ ଯେ କେହି ଏପ୍ରକାରର ମନ୍ତବ୍ୟରେ ନିଶ୍ଚିତ କ୍ରୁଦ୍ଧ ଓ ଅପମାନିତ ହୋଇଥାଆନ୍ତା । କିନ୍ତୁ ଆଚାର୍ଯ୍ୟେ ହସି ହସି କହିଲେ, ''ସତ୍ୟ ଓ କର୍ମ କାହାରି ପାଇଁ ଅପେକ୍ଷା ରଖେ ନାହିଁ । ଜୀବନ ଅଛି ଯେତେବେଳେ ମୃତ୍ୟୁ ନିଶ୍ଚୟ ଆସିବ ।'' ମନ୍ତବ୍ୟ ତାଙ୍କର ମାନସିକତାର କେଉଁ ବଳୟକୁ ଅନ୍ଧକାରାଚ୍ଛନ୍ନ କରି ରଖିଥିଲା ଜାଣିବାର ଅବକାଶ ରହିଲା ନାହିଁ ।

ବୃଦ୍ଧି ଓ ପରିପକ୍ୱତାର ଏକ ନିୟନ୍ତ୍ରିତ ଶିଖରରେ ଯେତେବେଳେ ମନୁଷ୍ୟ ଉପନୀତ ହୁଏ ସେତେବେଳେ ସେ ଯୌବନପ୍ରାପ୍ତ ହୋଇଛି ବୋଲି ଉପଲବ୍ଧି କରିହୁଏ । ଯୌବନାବସ୍ଥାରେ ମନୁଷ୍ୟର ଶକ୍ତି ସାମର୍ଥ୍ୟ ସର୍ବୋଚ୍ଚ ସ୍ତରରେ ଉପନୀତ ହୁଏ । କିନ୍ତୁ

ଉପଯୁକ୍ତ ଆଦର୍ଶ ଓ ମାର୍ଗଦର୍ଶନର ଅଭାବରେ ଯୁବକ ଯୁବତୀ ପ୍ରକୃତ ପଥରୁ ବିଚ୍ୟୁତ ହୋଇ ସଂସ୍କୃତି ପରିତ୍ୟାଗ କରି ବିକୃତିର ଆଶ୍ରୟ ନେଇଥାଆନ୍ତି । ଯୁବଶକ୍ତି ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ ହରିହର । ସେଥିପାଇଁ ସେ ଯୁବକମାନଙ୍କୁ ଆହ୍ୱାନ କରି କହୁଥିଲେ, ''ଦମ୍ଭ ଧର, ବିଶ୍ୱାସ ରଖ, କାମ କର, ନହେବ ଏପରି କେଉଁ କଥା ଅଛି ? ଆମର ସିନା ବଳ ନାହିଁ ଯେ ସବୁକଥାକୁ ଡରୁଛୁ । ତୁମେ ସବୁ ଯୁବକ, ପର୍ବତ ଟାଳିବ, ଏ କାମ ବା କେତେ ?'' ଏଥିରୁ ବୁଝାପଡ଼େ ଯେ ଯୁବଶକ୍ତି ଉପରେ ସେ କେତେ ଆସ୍ଥାବାଦୀ ଥିଲେ । ମଣିଷ ସମାଜରେ ଦେଖା ଦେଉଥିବା ସମସ୍ତ ବାଦ ବିବାଦ, ହିଂସା, ରକ୍ତପାତ ଓ ହରିଲୁଟ୍‌ର ମୂଳ ଉତ୍ପାଟନ କରିବା ପାଇଁ ଯୁବଶକ୍ତିର ହିଁ ଯଥେଷ୍ଟ ଶକ୍ତି ରହିଛି । 'ଭଲ ମଣିଷ ହୁଅ'– ଏହି ଆଶୀର୍ବାଦ ଓ ଉପଦେଶ ବାଣୀ ଶୁଣାଇବା ପାଇଁ ସେ ଦ୍ୱାରକୁ ଦ୍ୱାର ବୁଲୁଥିଲେ । କେହି ଯେବେ ତାଙ୍କୁ ପ୍ରଶ୍ନ କରୁଥିଲା, ''ଆପଣଙ୍କ କଥା ତ କେହି ଶୁଣୁନାହାନ୍ତି, ଆପଣ ଏତେ ବୁଝାଉଛନ୍ତି କାହିଁକି ?'' ବିଚଳିତ ନ ହୋଇ ହରିହର ବୁଝାଉଥିଲେ, ''ନଶୁଣନ୍ତୁ । ଥରେ କେହି ଶୁଣିଲେ ସେତକ ହିଁ ଯଥେଷ୍ଟ ।''

ନିଜେ ଇନ୍ଦ୍ରିୟାସକ୍ତ ରହି ଅନ୍ୟକୁ ଇନ୍ଦ୍ରିୟଭୋଗରୁ ବିରତ ହେବା ପାଇଁ ଉପଦେଶ ଦେଉଥିବା ଲୋକମାନଙ୍କ ଉଦାହରଣ ଅନେକ । କିନ୍ତୁ ଆଚାର୍ଯ୍ୟ ହରିହର ଥିଲେ ଯଥାର୍ଥ କର୍ମଯୋଗୀ । ତାଙ୍କର ଉପଦେଶ ହିଁ ଥିଲା କର୍ମ । ସ୍ୱକର୍ମ ମାଧ୍ୟମରେ ସେ ଦେଇଚାଲୁଥିଲେ ଉପଦେଶ । କେହି ଗ୍ରହଣ କରନ୍ତୁ ବା ନକରନ୍ତୁ ସେଥିପ୍ରତି ତାଙ୍କର ଦୃଷ୍ଟି ନଥିଲା । ଥରେ ପୁରୀ ସହରରେ ମଶା ଉପଦ୍ରବରେ ଜନସାଧାରଣ ଅତିଷ୍ଠ ହୋଇପଡ଼ିଲେ । ପୋଖରୀର ଦଳ ମଶାବଂଶ ବୃଦ୍ଧିର ପ୍ରଧାନ କାରଣ ବୋଲି ହରିହର ଜାଣିପାରିଲେ । ତେଣୁ ଚତୁଃପାର୍ଶ୍ୱସ୍ଥ ପୋଖରୀର ଦଳ ପରିଷ୍କାର କରିବା ନେଇ ସେ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ସହ ଆଲୋଚନା କଲେ । ପୁରୀ ଜିଲ୍ଲା ବୋର୍ଡ଼ର ସାହାଯ୍ୟରେ ଦଳୁଆ ପୋଖରୀଗୁଡ଼ିକ ସଫା ହୋଇପାରନ୍ତା ଚିନ୍ତା କରି ଉଭୟେ ପୁରୀ ଜିଲ୍ଲା ବୋର୍ଡ଼ର ସାହାଯ୍ୟ ଲୋଡ଼ିଲେ । ମାତ୍ର ପୁରୀ ଜିଲ୍ଲା ବୋର୍ଡ଼ ନିଜର ଅସାମର୍ଥ୍ୟ ପ୍ରକାଶ କଲେ । ଏଥିରେ ହତୋତ୍ସାହ ହୋଇ ନଯାଇ ହରିହର ନିଜେ ଗୋଟିଏ ଗାଁର

ପୋଖରୀରୁ ଦଳ ପରିଷ୍କାର କରିବା ପାଇଁ ଆଗଭର ହେଲେ । ତାଙ୍କ ସାଙ୍ଗରେ କୃପାସିନ୍ଧୁ ହୋତା ଯୋଗ ଦେଲେ । ଏହି କଥା ପ୍ରଚାର ହୋଇଯିବା କ୍ଷଣି ପ୍ରତ୍ୟେକ ଗ୍ରାମରେ ପୋଖରୀରୁ ଦଳ ସଫା ହେବାକୁ ଆରମ୍ଭ ହେଲା । ଆଚାର୍ଯ୍ୟ ମହାଶୟ ଘର ଘର ବୁଲି ଦଳ କାଢ଼ିବା ପାଇଁ ଲୋକମାନଙ୍କୁ ପ୍ରବର୍ତ୍ତାଉଥାନ୍ତି ।

ଅନେକ କାର୍ଯ୍ୟକ୍ରମର ନେତୃତ୍ୱ ନେଇ ମଧ ଆଚାର୍ଯ୍ୟ ନେତା ହେବାକୁ କେବେ ପସନ୍ଦ କରି ନାହାନ୍ତି । ଏହି ମୁକୁଟବିହୀନ ସମ୍ରାଟ ଯେତେବେଳେ ପୁରୀର ରଥଯାତ୍ରା ସମୟରେ ମେହେନ୍ତର କାମ କରିବା ପାଇଁ କୋଡ଼ି କୋଦାଳ ଧରି ବାହାରି ପଡୁଥିଲେ ସେହି ଦୃଶ୍ୟ ଦେଶର ତଥାକଥିତ ନେତା ଓ ମନ୍ତ୍ରୀମାନଙ୍କୁ ଭୀଷଣ ଲଜ୍ଜା ଦେଉଥିଲା । ଷାଠିଏ ବର୍ଷର ଜଣେ ବୃଦ୍ଧର କର୍ମ-ପ୍ରୀତି ଯୁବକମାନଙ୍କଠାରେ ବିଦ୍ୟୁତ୍ ସଂଚାର କରୁଥିଲା ଯେପରି ।

ଉପାଧି ପାଇଁ ଦିନକୁ ଦିନ ପାଗଳାମି ବଢ଼ିଚାଲିଛି । ଉପାଧି ଲାଳସାରେ ଯେତେକ ଅପକର୍ମ କରାଯାଇପାରେ ସେଥିପାଇଁ କୁଣ୍ଠାର ଅଭାବ କ୍ରମଶଃ ଉପଲବ୍ଧି କରିହେଉଛି । ଅର୍ଥସର୍ବସ୍ୱ ସାଂପ୍ରତିକ ଦୁନିଆରେ ଅର୍ଥ ବଳରେ ଗଧ ବି ଘୋଡ଼ା ଉପାଧି ପାଇବା କିଛି ବିଚିତ୍ର କଥା ହୋଇ ରହିନାହିଁ । ଗଣ୍ଡା ଗଣ୍ଡା ଉପାଧି ପାଇ ଦାଣ୍ଡରେ ଝୁଲୁଥିବା ସାଇନ୍‌ବୋର୍ଡ଼ ଭରପୂର କରିଦେବା ପାଇଁ ଶିକ୍ଷିତ ଯୁବକମାନେ ଖୁବ୍ ଆଗ୍ରହ ପ୍ରକାଶ କରିଆସୁଛନ୍ତି । ଯୋଗ୍ୟତା ଭିତ୍ତିରେ ସିନା ଉପାଧି ମିଳେ କିନ୍ତୁ ଉପାଧି ଭିତ୍ତିରେ ଯୋଗ୍ୟତା ମପାଯିବା କେତେଦୂର ଭ୍ରମାତ୍ମକ ଏଥିରୁ ସହଜରେ ଅନୁମେୟ । କିନ୍ତୁ ନିର୍ଲୋଭ, ବିନୟୀ ଓ ସ୍ପଷ୍ଟବାଦୀ ହରିହର ଆଚାର୍ଯ୍ୟ ଉପାଧି ଓ ଉପହାରକୁ ଭୀଷଣ ଘୃଣା କରୁଥିଲେ ।

ଏକଦା ଉତ୍କଳ ବିଶ୍ୱବିଦ୍ୟାଳୟ ହରିହରଙ୍କ ଅସାମାନ୍ୟ ଅବଦାନ ଓ କୃତିତ୍ୱ ପାଇଁ ସମ୍ମାନସୂଚକ ଡକ୍ଟରେଟ୍ ଉପାଧି ଦେବା ପାଇଁ ଚାହିଲେ । ଆଜିର ଉପାଧିରଙ୍କା ଯୁବକଟିଏ ଏତକ ଜାଣିବା ପରେ ସମ୍ବାଦପତ୍ରରେ ଉପାଧି ମିଳିବାର କାରଣ ସହ ପିତା ପିତାମହଙ୍କ ନାମ ଓ ବିବାହିତ ହୋଇଥିଲେ ଶାଶୁଶ୍ୱଶୁରଙ୍କ ନାମ ଲେଖି ଦାନ୍ତନିକୁଟାଇ ବିଜ୍ଞାପନ ଛାପିବା ପାଇଁ ଦଉଡ଼ିଥାଆନ୍ତା, କିନ୍ତୁ ନିର୍ଭୀକ ହରିହର ଉପାଧି ଗ୍ରହଣକୁ ନିଜ ପାଇଁ ଅପମାନଜନକ ମନେ କରି ଗ୍ରହଣ କରିନଥିଲେ ।

ବର୍ତ୍ତମାନ ଯୁଗ ବଦଳିଛି । 'ପ୍ରେଜେଣ୍ଟେସନ' ବା ଉପହାରକୁ ଆଧାର କରି ଜଣଙ୍କର ମନୁଷ୍ୟତ୍ୱ ଆକଳନ କରାଯିବାର ସୂତ୍ର ମନୁଷ୍ୟ ଆବିଷ୍କାର କରିପାରିଛି । ବିବାହ ତିଥିରେ ହେଉ ବା ଜନ୍ମଦିନରେ ହେଉ, ତରବରିଆ ଭାବରେ ମୂର୍ତ୍ତିଟେ କିମ୍ବା ଘଣ୍ଟାଟିଏ ରଙ୍ଗିନ କାଗଜ ଗୁଡ଼ାଇ ତା ଉପରେ ନିଜର ନାମ ଫଳକ ମାରି ନିମନ୍ତ୍ରଣ ରକ୍ଷା କରିବା ପାଇଁ ଆଗଭର ହୁଅନ୍ତି ବନ୍ଧୁବର୍ଗ । ଗ୍ରହୀତା ମଧ୍ୟ ନିର୍ବିବାଦରେ ଗଭୀର ଆଶ୍ୱସ୍ତିର ସହ ଉପହାରର ସଂଖ୍ୟା ବୃଦ୍ଧିକୁ ଆଶାୟିତ ହୋଇ ଚାହିଁ ବସିଥାଏ । ହରିହରଙ୍କୁ ଏକ ନିର୍ଦ୍ଦିଷ୍ଟ ଉତ୍ସବରେ ଅଭିନନ୍ଦନ ଦେବାର ସ୍ଥିର କରାଯାଇଥାଏ । ସେହି ଜନ୍ମଦିନ ଉତ୍ସବ ଉପଲକ୍ଷେ ଗୋଟିଏ ଅଭିନନ୍ଦନ ଗ୍ରନ୍ଥ ଉଦ୍ୟୋକ୍ତାମାନେ ପ୍ରକାଶ କରିଥାଆନ୍ତି । ଅଭିନନ୍ଦନ ଗ୍ରନ୍ଥ ସହ ୫ ହଜାର ଟଙ୍କାର ଗୋଟିଏ ଥଳି ଆଚାର୍ଯ୍ୟ ମହାଶୟଙ୍କୁ ଉପହାର ଦେବାଲାଗି କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ସେ ବହୁ ବାଧବାଧକତାରେ ସେହି ଉତ୍ସବକୁ ଗଲେ । ମାତ୍ର ଯେତେବେଳେ ତାଙ୍କ ହାତରେ ଥଳି ଅର୍ପଣ କରିବାର ଉପକ୍ରମ ହେଲା ସେତେବେଳେ ଆଚାର୍ଯ୍ୟ ମହାଶୟ ପ୍ରଥମେ ଭୀଷଣ କୁଣ୍ଠାପ୍ରକାଶ କରି ପରେ କହିଥିଲେ–''ଟଙ୍କା ଥଳି ଦେଉଛ ଦିଅ, ଏହି ଟଙ୍କା ଦରିଦ୍ର ଓ ହରିଜନମାନଙ୍କ ସେବାରେ ଲାଗିପାରିବ । କିନ୍ତୁ ଅଭିନନ୍ଦନ ଗ୍ରନ୍ଥ ମୋର କଣ ହେବ ? ସେ ଗ୍ରନ୍ଥରେ ମୋ ଗୁଣାବଳୀ ଯାହାସବୁ ଲେଖା ହୋଇଛି, ତାକୁ ପଢ଼ି ମୁଁ କ'ଣ ଅଧିକ ଖୁସି ହେବି ବୋଲି ଭାବୁଛ ।'' ସ୍ୱୟଂ ବିଷ୍ଣୁଙ୍କୁ ମଧ୍ୟ ''ସ୍ତୁତିପ୍ରିୟ'' ବୋଲି ବିଷ୍ଣୁ ସହସ୍ର ନାମରେ ବର୍ଣ୍ଣନା କରାଯାଇଛି । କିନ୍ତୁ ବିନୟର ମୂର୍ତ୍ତିମନ୍ତ ପ୍ରତୀକ ହରିହର ନିଜ ପ୍ରଶଂସା ଶୁଣିବା ପାଇଁ ସାଧାରଣଙ୍କ ପରି ବ୍ୟଗ୍ର ନଥିଲେ । ଏହି ସମ୍ବନ୍ଧରେ ମହାତ୍ମା ଗାନ୍ଧୀ ଲେଖିଥିଲେ– ''ଆଚାର୍ଯ୍ୟ ହରିହର ଦାସଙ୍କର ଷାଠିଏ ବର୍ଷ ପୂରିଯାଉଥିବା ଯୋଗୁଁ ତାଙ୍କୁ ଥଳି ଭେଟି ଦେବା ପାଇଁ ଯେଉଁ ଉତ୍ସବ ହେଉଛି, ସେଥିରେ ଉପସ୍ଥିତ ରହିପାରିଥିଲେ ମୁଁ ଭାରି ଖୁସି ହୋଇଥାନ୍ତି । ଆମର ଯେଉଁ ସ୍ୱାର୍ଥତ୍ୟାଗୀ କର୍ମୀମାନେ ଅଛନ୍ତି, ସେ ସେମାନଙ୍କ ଭିତରୁ ଜଣେ । ମାତୃଭୂମିର ସେବା ପାଇଁ ଭଗବାନ ତାଙ୍କୁ ଆହୁରି ବହୁବର୍ଷ ବଂଚାଇ ରଖନ୍ତୁ ।''

ଆଚାର୍ଯ୍ୟ ମହାଶୟ ଜଣେ ପୁଞ୍ଜିପତି ବା ଅର୍ଥଲୋଭୀ ବ୍ୟକ୍ତି ନଥିଲେ । ସେଥିରେ ଗାନ୍ଧିବାଦୀ ଓ ଗାନ୍ଧୀଙ୍କର ଚରିତ୍ରବତ୍ତା ତଥା ଜୀବନାଦର୍ଶ ସହ ତାଙ୍କର

ସାମଞ୍ଜସ୍ୟ ଥିଲା । କିନ୍ତୁ ତାଙ୍କ ପାଖକୁ ସାହାଯ୍ୟ ପ୍ରାର୍ଥନା କରିବାକୁ ଆସିଥିବା ବ୍ୟକ୍ତି କେବେ ନିରାଶ ହୋଇ ଫେରିନାହିଁ । ଏକଦା ହରିହର କଟକର ଭୂଦାନ କାର୍ଯ୍ୟାଳୟରେ ବିଶ୍ରାମ କରୁଥାନ୍ତି । ନିମାପଡ଼ାରୁ ଜଣେ କର୍ମୀ ଆସି ତାଙ୍କ ପାଖରେ ପହଞ୍ଚିଲେ । ଦ୍ୱିପ୍ରହରରେ ଯାତ୍ରାଜନିତ କ୍ଲାନ୍ତି ତାଙ୍କ ମୁହଁରୁ ବେଶ୍ ବାରି ହୋଇ ପଡୁଥାଏ । କ୍ଲାନ୍ତି ଓ ହତାଶାଭାବରେ ମୁଖମଣ୍ଡଳ ପ୍ରାୟ ବିବର୍ଣ୍ଣ ହୋଇଯାଇଥାଏ । ଏପରି ଅବସ୍ଥାରେ କର୍ମୀଜଣଙ୍କୁ ଦେଖି ହରିହର ଆଶ୍ଚର୍ଯ୍ୟ ହୋଇ ଆସିବାର କାରଣ ଜିଜ୍ଞାସା କଲେ । କର୍ମୀ ଜଣକର ପୁଅଟି ପରୀକ୍ଷା ଦେବାର ଥାଏ । ହେଲେ ଗରିବ ପିତା ପାଖରେ ପରୀକ୍ଷା ଫିସ୍ ପାଇଁ ପଇସା ନଥାଏ । ତେଣୁ ସମସ୍ତ ଆଶା ଓ ଭରସା ନେଇ ସେ ହରିହରଙ୍କ ପାଖକୁ ସୁଦୂର ନିମାପଡ଼ାରୁ ଛୁଟି ଆସିଥାଆନ୍ତି । ହରିହର ମଧ୍ୟ ସେତେବେଳକୁ କପର୍ଦ୍ଦକଶୂନ୍ୟ । କିନ୍ତୁ କର୍ମୀଟିର ବିଶ୍ୱାସକୁ ମୂଲ୍ୟଦେଇ ହରିହର ତାଙ୍କୁ ଆଶ୍ୱାସନା ଦେଲେ । ଅପରାହ୍ନ ହେବାପରେ ଦୁହେଁ ଉତ୍କଳ ଭୀମ ପଦ୍ମଚରଣଙ୍କ ନିକଟକୁ ଗଲେ । ହରିହରଙ୍କ କଥା ନସରୁଣୁ ସେ ମହାଶୟ ଖୁସିରେ ପଚାଶ ଟଙ୍କା ଆଣି ଦେଲେ । କର୍ମୀଜଣକ ଖୁସି ମନରେ ହରିହରଙ୍କୁ ଅଜସ୍ର ଧନ୍ୟବାଦ ଦେଇ ପ୍ରତ୍ୟାବର୍ତ୍ତନ କଲେ । ଧନ ନଥାଇ ବି ସେ ଥିଲେ ମହାଦାନୀ । ପରଦୁଃଖକାତର ତାଙ୍କର ପ୍ରାଣ ସର୍ବଦା ପତିତ ଓ ନିଷ୍ପେଷିତମାନଙ୍କ ପାଇଁ କାନ୍ଦି ଉଠୁଥିଲା । ଏହି ମହନୀୟ ଚରିତ୍ରବତ୍ତା ପାଇଁ ସେ ସମସ୍ତଙ୍କର ମୁରବି ଥିଲେ ।

ମନୁଷ୍ୟ ତିନିଗୋଟି କର୍ମର ଫଳ ଭୋଗ କରିଥାଏ । ପ୍ରାରବ୍ଧ, ପ୍ରାରମ୍ଭ ଓ କ୍ରିୟମାଣ । ପୁନର୍ଜନ୍ମବାଦରେ ବିଶ୍ୱାସ କରୁଥିବା ଦାର୍ଶନିକମାନଙ୍କ ଅନୁଯାୟୀ ମନୁଷ୍ୟର ଐହିକ କର୍ମ ଅନେକ ଅନେକ ଜନ୍ମର ସଂସ୍କାରର ପରିପ୍ରକାଶ । ପୂର୍ବଜନ୍ମରେ ଯାହାକିଛି ସଂସ୍କାର ଲାଭ ହୋଇଥାଏ ଚଳିତ ଜନ୍ମରେ ସେହି କର୍ମ ଅବିକଳ ଅବ୍ୟାହତ ରହେ । ଆଦି ଶଙ୍କରାଚାର୍ଯ୍ୟ ୧୨ ବର୍ଷ ବେଳକୁ ସକଳ ଧର୍ମଶାସ୍ତ୍ର ଓ ବେଦରେ ପ୍ରବୀଣ ହୋଇ ଉଠିଥିଲେ । ବୋଧହୁଏ ଏହା ଥିଲା ତାଙ୍କର ଅନ୍ତିମ ସଂସ୍କୃତ ଜନ୍ମ । ସଂସ୍କାରରେ ତାରତମ୍ୟ ଯୋଗୁଁ ମନୁଷ୍ୟଜଗତରେ ଗୁଣବୈଷମ୍ୟ ପରିଦୃଷ୍ଟ ହୁଏ ।

ବ୍ରହ୍ମପୁର ଜେଲ୍‌ରେ ଦୁଇବର୍ଷ କଟାଇବା ସମୟରେ ଆଚାର୍ଯ୍ୟେ ନିଜର ନିଷ୍କଳଙ୍କ ଅଧ୍ୟାତ୍ମବାଦର ପରିଚୟ ଦେଇଥିଲେ । ପ୍ରତିଦିନ ଜଗନ୍ନାଥ ଦାଶ, ଲୋକନାଥ ମିଶ୍ର,

ଗୋପବନ୍ଧୁ ଚୌଧୁରୀ ଓ ଭାଗୀରଥି ମହାପାତ୍ରଙ୍କର ମେଳରେ ବସି ସେ ଗୀତା ଓ ଉପନିଷଦ୍ ପଢ଼ାନ୍ତି ବୋଲି ବିନୋଦ କାନୁନ୍‌ଗୋଙ୍କର ଲେଖାରୁ ପ୍ରମାଣ ମିଳେ । ସ୍ୱୟଂ ହରିହର ଗୀତା ଓ ଉପନିଷଦ୍‌ମାନଙ୍କର ସରଳ ଅନୁବାଦ ଓ ବ୍ୟାଖ୍ୟା କରିଥିଲେ । ଉପନିଷଦ୍‌ରୁ ସେ ଲାଭ କରିଥିଲେ ଜ୍ଞାନ ଓ କର୍ମର ଅପୂର୍ବ ସମନ୍ୱୟ । ପୂର୍ଣ୍ଣତା ହିଁ ସର୍ବଦା ଅବ୍ୟାହତ ଓ ଅବିନଶ୍ୱର, ତାହାହିଁ ଶ୍ରେୟ– ଏକଥା ହରିହର ଉପନିଷଦ୍‌ରୁ ଶିକ୍ଷା କରିଥିଲେ ।

"ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍‌ପୂର୍ଣ୍ଣ ମୁଦଚ୍ୟତେ । ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।" କର୍ମରେ ବାକ୍ୟରେ ତାଙ୍କର ଅବିରତ ପ୍ରତିଫଳିତ ହେଉଥିବା ଶ୍ରୀମଦ୍ ଭଗବତ୍ ଗୀତାର ମୃଦୁଗମ୍ଭୀର ଶ୍ଳୋକାବଳୀ । ସେ ଥିଲେ ଶ୍ରୀମଦ୍ ଭଗବତ୍ ଗୀତାର ନିୟମିତ ପାଠକ । ସେ ଥିଲେ ନିଷ୍କାମ କର୍ମଯୋଗୀ ଓ "କର୍ମଣ୍ୟେ ବାଧିକାରସ୍ତେ, ମା ଫଳେଷୁ କଦାଚନ ମା କର୍ମ ଫଳ ହେତୁର୍ଭୁ, ର୍ମାତେସଙ୍ଗୋଽସ୍ତ୍ୱ କର୍ମଣି" ଶ୍ଳୋକର ଉପାସକ । ସେ ଅକର୍ମରେ ଆସକ୍ତ ନଥିଲେ ବା କର୍ମଫଳରେ ଆଶା ମଧ୍ୟ ରଖୁନଥିଲେ । ଗୀତାର କର୍ମଯୋଗ ପାଠକଲାବେଳେ ସେ ଯେପରି କଠୋର ହୋଇ ଉଠୁଥିଲେ ବିଶ୍ୱରୂପଦର୍ଶନ ପାଠ କରିବା ମୁହୂର୍ତ୍ତରେ ଲୋତକ ଛଳଛଳ ଚକ୍ଷୁରେ କିଛି ସନ୍ଧାନ କରୁଥିଲେ ଶୂନ୍ୟତା ମଧ୍ୟରୁ । ଗୀତା ମଧ୍ୟରେ ଭଗବାନ୍ ଭକ୍ତକୁ ପ୍ରତିଶ୍ରୁତି ଦେଇଛନ୍ତି "ଯଦାଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ଅଭ୍ୟୁତ୍‌ଥାନମ ଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ, ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାଂ ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।" ବୋଧହୁଏ ସେ ଖୋଜି ଚାଲିଥିଲେ ସେହି ବ୍ରହ୍ମାଣ୍ଡନିୟନ୍ତା ଯୋଗମାୟାଧର ପରମେଶ୍ୱରଙ୍କୁ । କାହିଁ ଏପର୍ଯ୍ୟନ୍ତ ସେ ଅବତାର ନେଇ ନାହାନ୍ତି ଅପାପବିଦ୍ଧ ନିଷ୍କଳଙ୍କ ନିର୍ଦ୍ଦୋଷ ଭାରତୀୟମାନଙ୍କୁ ଇଂରେଜ ଶାସନର ରାବଣରାଜରୁ ରକ୍ଷା କରିବା ପାଇଁ । ଭାରତୀୟ ସଂସ୍କୃତିର ମୂଳପିଣ୍ଡକୁ ଦୋହଲେଇ ରାକ୍ଷସ ସଂସ୍କୃତି ପ୍ରତିଷ୍ଠା କରୁଥିବା ସେହି ଅର୍ବାଚୀନ ପାଷଣ୍ଡ ଇଂରେଜମାନଙ୍କ ପାଇଁ ବିଶ୍ୱରୂପ ନୀରବ ହୋଇଯାଇଛି କ'ଣ ପାଇଁ ? ଏହି ପବିତ୍ର ଭୂମିର ଅର୍ଜୁନମାନଙ୍କର ସାରଥି କିଏ ହେବ ? କିଏ ମାର୍ଗଦର୍ଶନ କରାଇବ ଇଂରେଜ ରଥୀମାନଙ୍କୁ ଏକ ପରେ

ଏକ ସମୁଚିତ ଶିକ୍ଷା ଦେବା ପାଇଁ ? ଅସ୍ଥିର ହୋଇପଡ଼ନ୍ତି ହରିହର । ପୁଣି ଆତ୍ମସ୍ଥ ହୁଅନ୍ତି ଓ ସମର୍ପଣ କରିଦିଅନ୍ତି ନିଜକୁ ସେହି ପ୍ରଭୁ ପଦାରବିନ୍ଦରେ, ପରମବିଶ୍ୱାସରେ ''ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ, ଅହଂ ତ୍ୱାମ୍ ସର୍ବ ପାପେଭ୍ୟଃ ମୋକ୍ଷୟିଷ୍ୟାମି ମାଶୁଚଃ ।'' ସବୁ ଧର୍ମ (କର୍ତ୍ତବ୍ୟ)କୁ ତ୍ୟାଗ କରି ମୋଠାରେ ଶରଣାଗତ ହୁଅ, ମୁଁ ତୋତେ ସମସ୍ତ ଦୁର୍ଗତିରୁ ମୁକ୍ତ କରିବି । ବାସ୍ତବିକ ସମସ୍ତ ଚିନ୍ତା ଚେତନାର ନଦୀକୁ ସେ ବିଶ୍ୱରୂପକୁ ମୁହାଁଇ ଦେଇ ହରିହର ବେଶ୍ ଆଶ୍ୱସ୍ତ ହେଉଥିଲେ ଓ ନିତ୍ୟକର୍ମରେ ମନ ଦେଉଥିଲେ । ଆଚାର୍ଯ୍ୟେ ଥିଲେ ଗୀତୋକ୍ତ ସ୍ଥିତପ୍ରଜ୍ଞ, ମହାମନା ଓ ସେହି ଆଦର୍ଶର ଧାରା ନିରନ୍ତର ଅନୁସରଣ କରି ଏକ ସମର୍ପିତ ସନ୍ନ୍ୟାସୀ ଜୀବନ ବିତାଉଥିଲେ । ଗୀତାର ଦ୍ୱିତୀୟ ଅଧ୍ୟାୟର ୫୬ତମ ଶ୍ଳୋକରେ ଭଗବାନ୍ ଶ୍ରୀକୃଷ୍ଣ ସ୍ଥିତପ୍ରଜ୍ଞର ଭାଷା ନିର୍ଣ୍ଣୟ କରିବାକୁ ଯାଇ କହିଛନ୍ତି, ''ଦୁଃଖେଷ୍ୱନୁଦ୍‌ବିଗ୍ନ ମନାଃ, ସୁଖେଷୁ ବିଗତସ୍ପୃହଃ । ବୀତରାଗଭୟକ୍ରୋଧଃ, ସ୍ଥିତଧୀର୍ମୁନିରୁଚ୍ୟତେ ।'' ଦୁଃଖ ପଡ଼ିଲେ କାତର ହେବା, ସୁଖବେଳେ ଆନନ୍ଦରେ ମାତି ଉଠିବା, ପୁଣି କ୍ରୋଧ, ହିଂସା ଗର୍ବ, ବାଦ, ସ୍ନେହ, ଭୟ ଯାହାର ମନରେ ସ୍ଥାନ ପାଏ ନାହିଁ ତାହାକୁ ସ୍ଥିତପ୍ରଜ୍ଞ କୁହନ୍ତି । ପୁଣି ୫୭ତମ ଶ୍ଳୋକରେ ସ୍ଥିତପ୍ରଜ୍ଞର ସଂଜ୍ଞା ନିର୍ଣ୍ଣୟ କରାଯାଇ କୁହାଯାଇଛି, ''ଯଃ ସର୍ବତ୍ରା ନର୍ଭସ୍ନେହ, ସ୍ତତ୍ତତ୍ ପ୍ରାପ୍ୟ ଶୁଭାଶୁଭଂ । ନାଭିନନ୍ଦତି ନ ଦ୍ୱେଷ୍ଟି, ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ।'' ଯେ ଲୋକ ଭଲ ମନ୍ଦ, ନିନ୍ଦା ପ୍ରଶଂସା ଏସବୁ ଇଚ୍ଛା କରେ ନାହିଁ, ମନ ଯାହାର ଅଭିମାନଶୂନ୍ୟ, ସମ୍ପତ୍ତି, ସ୍ତ୍ରୀ, ପୁତ୍ର, କଳତ୍ର ଓ ନିଜ ଦେହ ପ୍ରତି ଆସକ୍ତି ବା ମାୟା ନଥାଏ ପୁଣି ମନ ଓ ବଚନ ଯାହାର ଏକ ପ୍ରକାର ତାହାକୁ ସ୍ଥିତପ୍ରଜ୍ଞ କୁହନ୍ତି । ଉପରୋକ୍ତ ଶ୍ଳୋକଦ୍ୱୟ ସହିତ ହରିହର ଦାସଙ୍କ ଗୁଣରେ ସାମଞ୍ଜସ୍ୟ ଦେଖାଯାଏ । ବୋଧହୁଏ ହରିହର ଦାସ ଥିଲେ ଭଗବାନ୍‌ଙ୍କର ଅନ୍ୟତମ ଅବତାର । ତତ୍‌କାଳୀନ ଉତ୍କଳୀୟ ସମାଜରେ ପରିଦୃଷ୍ଟ ବିଶୃଙ୍ଖଳା, କୁସଂସ୍କାର ଓ ଧର୍ମସଂକଟ ମଧ୍ୟରେ ଭଗବାନ୍ ହରିହରଙ୍କ ରୂପରେ ଅବତୀର୍ଣ୍ଣ ହୋଇଥିଲେ କର୍ମ ଶିକ୍ଷା ଦେବା ପାଇଁ । ସେ ବାଧ୍ୟବାଧକତାରେ କାହାକୁ ଶିକ୍ଷା ନଦେଇ ନିଜ କର୍ମ ନିଜେ କରି ଯାଉଥିଲେ ।

ଗୀତାର ତୃତୀୟ ଅଧ୍ୟାୟର ୨୬ତମ ଶ୍ଳୋକରେ ଭଗବାନ୍ କୃଷ୍ଣ କହିଛନ୍ତି ''ନ ବୁଦ୍ଧି ଭେଦଂ ଜନୟେ, ଦଜ୍ଞାନାଂ କର୍ମ ସଙ୍ଗିନାଂ । ଯୋଜୟେତ୍ ସର୍ବକର୍ମାଣି ବିଦ୍ୱାନ୍ ଯୁକ୍ତଃ ସମାଚରନ୍ ।'' ଯେଉଁ ମୂର୍ଖମାନେ କର୍ମରେ ଆସକ୍ତ ସେହିମାନଙ୍କ ମନରେ କର୍ମ ବିଷୟରେ ମତଭେଦ ନଜନ୍ମାଇ ଜ୍ଞାନୀ ନିଜେ କର୍ମ କରି ସେମାନଙ୍କୁ ସେହି ବାଟରେ ପ୍ରବର୍ତ୍ତାଇବ ।

ଗୀତାର ପ୍ରତ୍ୟେକ ଉପଦେଶକୁ ଆଚାର୍ଯ୍ୟେ ଦୀର୍ଘ ୯୨ ବର୍ଷ କାଳ ଜୀବିତ ରହି ଅକ୍ଷରେ ଅକ୍ଷରେ ପାଳନ କରିଯାଇଛନ୍ତି । ଯେ ଅସତ୍ ସଙ୍ଗ କରେ ନାହିଁ, ନମ୍ରଭାଷା କହେ, ଭଲ ହେଉ ବା ମନ୍ଦ ହେଉ ଧୈର୍ଯ୍ୟର ସହିତ କର୍ମ କରେ, ସେ କର୍ମରେ ସଫଳ ବା ନିଷ୍ଫଳ ହେଉ କୌଣସି ଶୋଚନା କରେ ନାହିଁ ତାହା ହେଉଛି ସତ୍ତ୍ୱଗୁଣସଂପନ୍ନ ବ୍ୟକ୍ତିର ଗୁଣ । ଯଥା– 'ମୁକ୍ତ ସଙ୍ଗୋଽନହଂବାଦୀ, ଧୃତ୍ୟୁତ୍ସାହସମନ୍ୱିତଃ । ସିଦ୍ଧ୍ୟ ସିଦ୍ଧ୍ୟୋ ନିର୍ବିକାରଃ, କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ ।' ହରିହରଙ୍କ ପରି ସାତ୍ତ୍ୱିକ ବ୍ୟକ୍ତି ବାସ୍ତବରେ ସମାଜରେ ବିରଳ । ସେ ଥିଲେ ଈଶ୍ୱରଙ୍କ ବିଭୂତିସଂପନ୍ନ ମହାମାନବ ପୁଣ୍ୟଶ୍ଳୋକ । ପ୍ରତ୍ୟହ କର୍ମମୟ ଜୀବନର ଆରମ୍ଭରୁ ସେ ଦୁଇ ତିନି ଘଣ୍ଟା ପ୍ରାର୍ଥନା କରୁଥିଲେ । ସେହି ପ୍ରାର୍ଥନାର ଲକ୍ଷ୍ୟ ଆଉ କିଛି ନଥିଲା । 'ବସୁଧୈବ କୁଟୁମ୍ବକମ୍' ପରି ମହାନ୍ ଚିନ୍ତାଧାରାରେ ତାଙ୍କର ଉଦାର ହୃଦୟ ପୂର୍ଣ୍ଣ ହେଉ ଏବଂ ସମସ୍ତେ ସୁଖୀ ହୁଅନ୍ତୁ, ଭଲ ମଣିଷ ହୁଅନ୍ତୁ–

''ସର୍ବେ ଭବନ୍ତୁ ସୁଖୀନୋ, ସର୍ବୋସନ୍ତୁ ନିରାମୟା, ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମାଂ କଶ୍ଚିତ୍ ଦୁଃଖ ଭାଗ ଭବେତ୍ ।''

## ଆଚାର୍ଯ୍ୟ ମହାଶୟଙ୍କ ବିଶେଷ କୃତିତ୍ୱ ଓ ଉପସଂହାର

ଆଚାର୍ଯ୍ୟ ମହାଶୟଙ୍କର ଗୀତାର ସଂସ୍କରଣ ନୀଳକଣ୍ଠଙ୍କ ଗୀତାର ସଂସ୍କରଣ-ଠାରୁ ଅଧିକ । ନୀଳକଣ୍ଠ ନିଶ୍ଚିତ ଭାବରେ ଜଣେ ବିଦ୍ୱାନ୍ ବ୍ୟକ୍ତି ଥିଲେ ଏଥିରେ ସନ୍ଦେହର ଅବକାଶ ନାହିଁ ମାତ୍ର ଆଚାର୍ଯ୍ୟଙ୍କର ଭାଷା ଓ ବିନ୍ୟାସ ଶୈଳୀ ବେଶ୍ ମନଛୁଆଁ ହୋଇପାରିଥିଲା । ତେଣୁ ନୀଳକଣ୍ଠ ଥରେ କହିଥିଲେ ''ମୋ ଗୀତା କେହି ବୁଝିପାରୁ ନାହାନ୍ତି କି ? ହରି ଭାଇନା ଗୀତା ବହିର ଏତେ ଆଦର, ଅଥଚ ମୋ ଗୀତା ସେମିତି ଦୋକାନରେ ପଡ଼ି ରହିଛି ।''

ଆଜିକାଲି ଇଂରାଜୀ ବ୍ୟାକରଣ ହେଉ ବା ଯେକୌଣସି ଆଧୁନିକ ଭାଷାର ବ୍ୟାକରଣ ହେଉ ସବୁକିଛି ବ୍ୟବହାରିକ ହୋଇଗଲାଣି । ଔପଚାରିକତାର ଘୋର ଅଭାବ ପରିଲକ୍ଷିତ ହେଉଛି ପ୍ରତ୍ୟେକ ଭାଷାରେ । ଭାବପ୍ରକାଶ ପାଇଁ ବ୍ୟାକରଣ ଆଉ ମାଧ୍ୟମ ହୋଇ ରହୁନାହିଁ । ସେଥିପାଇଁ ତ ଭାଷା ନାମରେ ଅନେକ ବିକୃତ ସାହିତ୍ୟ ଜୋର ଜବରଦସ୍ତ ପାଠକମାନଙ୍କ ଉପରେ ଲଦି ଦିଆଯାଉଛି । କିନ୍ତୁ ସତ୍ୟବାଦୀ ଯୁଗରେ ଔପଚାରିକତା ଉପରେ ଯଥେଷ୍ଟ ଧ୍ୟାନ ଦିଆଯାଉଥିଲା । ଔପଚାରିକତାର କ୍ଲିଷ୍ଟତା ଦୂର କରିବା ପାଇଁ ଯଥାସାଧ୍ୟ ଉଦ୍ୟମ ଅବ୍ୟାହତ ରହିଥିଲା । କୋମଳମତି ବାଳକ ବାଳିକାମାନଙ୍କୁ ଇଂରାଜୀ ଶିକ୍ଷା ଦେବା ପାଇଁ ଆଚାର୍ଯ୍ୟ ହରିହର ଏକ କ୍ଷୁଦ୍ର ଅଥଚ ପ୍ରଭାବଶାଳୀ ଇଂରାଜୀ ବ୍ୟାକରଣ ପୁସ୍ତକ ପ୍ରକାଶ କରିଥିଲେ । ତାର ନାମ ଥିଲା ''Child's Easy First Grammar'', ଏହି ବ୍ୟାକରଣ ବହିଟି ଅତି ସରଳ ଓଡ଼ିଆ ଓ ଇଂରାଜୀ ଭାଷାରେ ଲିଖିତ ହୋଇଥିଲା ।

ସତ୍ୟବାଦୀ ଗୋଷ୍ଠୀର ଅନ୍ୟାନ୍ୟ ରଥୀଙ୍କ ପରି ଆଚାର୍ଯ୍ୟେ ସାହିତ୍ୟିକ ଭାବରେ ବିଶେଷ ପରିଚିତ ହୋଇ ପାରିନାହାନ୍ତି । ମାତ୍ର ସେ ଥିଲେ ସାହିତ୍ୟାନୁରାଗୀ ଓ କିଛିଦିନ

ପାଇଁ 'ସମାଜ'ର ସମ୍ପାଦକ ଦାୟିତ୍ୱ ତୁଲାଇଥିବା ପ୍ରତିଭାବାନ୍ ବ୍ୟକ୍ତି । ସେ କଳ୍ପନା ବିଳାସୀ ନଥିଲେ ତେଣୁ କାବ୍ୟିକ ପ୍ରତିଭା ତାଙ୍କର ସେତେ ବିକଶିତ ହୋଇପାରିନଥିଲା । ତାଙ୍କପରି ଗାନ୍ଧୀବାଦୀ ମହାପୁରୁଷଙ୍କ ପାଖରେ ରସିକତା ଆଶା କରିବା ଏକ ବିଡ଼ମ୍ବନା ଥିଲା । କିନ୍ତୁ ବ୍ୟଙ୍ଗ ସୃଷ୍ଟିରେ ସେ ଥିଲେ ଅଦ୍ୱିତୀୟ । ଯଦି ତାଙ୍କର ଆଶୁ ବ୍ୟଙ୍ଗକୁ ଲେଖନୀରେ ଧରି ରଖପାରିଥାନ୍ତେ ତେବେ ନିଶ୍ଚୟ ଜଣେ ବ୍ୟଙ୍ଗ ସାହିତ୍ୟିକ ଭାବରେ ଆସନ ଜମାଇ ବସିଥାନ୍ତେ । କିନ୍ତୁ ବିଧାତାର ଇଚ୍ଛା ଥିଲା ଭିନ୍ନ । ଯିଏ ନିଷ୍ପେଷିତମାନଙ୍କୁ ଭାରମୁକ୍ତ କରିବାକୁ, ପରାଧୀନମାନଙ୍କୁ ସ୍ୱାଧୀନତାର ମନ୍ତ୍ର ଶିକ୍ଷା ଦେବାକୁ, ଅଜ୍ଞାନମାନଙ୍କୁ ଜ୍ଞାନାଲୋକ ପ୍ରଦାନ କରିବାକୁ ବିଧାତା ପାଖରେ ପ୍ରତିଶ୍ରୁତିବଦ୍ଧ, ତାଙ୍କୁ ବ୍ୟଙ୍ଗ ଓ ହାସ୍ୟରସ ସୃଷ୍ଟି କରିବା ପାଇଁ ଅବସର ମିଳିବ କେଉଁଠାରୁ । ମାତ୍ର ୧୯୪୪ ଠାରୁ ୧୯୫୧ ଯାଏଁ ସେ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟଥିଲେ ଓ କିଛି ଦିନ ପାଇଁ ଉତ୍କଳ କଂଗ୍ରେସ କମିଟିର ସଭାପତି ଅନିଚ୍ଛାସତ୍ତ୍ୱେ ହୋଇଥିଲେ ।

ଛାତ୍ରାବସ୍ଥାରେ ତାଙ୍କ ଖାଦ୍ୟପେୟର ନିରାଡ଼ମ୍ବରତା ବହୁ ପୂର୍ବରୁ ଉଲ୍ଲେଖ କରିଛୁ । କିନ୍ତୁ ଭବିଷ୍ୟତରେ ସେ ଚାହିଁଥିଲେ ଆଜିକାଲିର ରାତାରାତି ନେତାଙ୍କ ପରି ମଟନ ବିରିୟାନୀ ଖାଇ ପାରିଥାନ୍ତେ । କିନ୍ତୁ ଉଚ୍ଚାକାଂକ୍ଷା ଓ ସରଳ ଚଳଣି ଥିଲା ତାଙ୍କର ଜୀବନାଦର୍ଶ । ସନ୍ଧ୍ୟା ପୂର୍ବରୁ ସଚ୍ଚିଦାନନ୍ଦଙ୍କ ସହ ଫେରି ସେ ସାମାନ୍ୟ ଜଳଖିଆ (ଚୁଡ଼ାଭଜା, ମୁଢ଼ି, ଉଖୁଡ଼ା) ଖାଆନ୍ତି । ତାଙ୍କ ସଂସ୍ପର୍ଶରେ ଆସିଥିବା ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀଙ୍କ ଭାଷାରେ ''ପାଟିରେ ଭିଜେଇ ଭିଜେଇ ନିର୍ବିକାର ଭାବରେ ସେ ଏଥିରୁ ଦି'ଟା ଖାଇଦିଅନ୍ତି । ପାଣି ଗ୍ଲାସେ ପିଅନ୍ତି । ତାପରେ ସାନ୍ଧ୍ୟ ପ୍ରାର୍ଥନା ''ବିପଦ ନୁହଁଇ ତ ବିପଦ କେବେ– ସମ୍ପଦ ନୁହଁଇ ସମ୍ପଦ ଭବେ ।'' ଦିବା ଭୋଜନରେ ସେ ଭାତ ଡାଲି ଓ ଗୋଟିଏ ଠା'ର ତରକାରିରେ ସନ୍ତୁଷ୍ଟ ହେଉଥିଲେ ।

ସାଧନାରେ ଉତ୍କର୍ଷ ଲାଭ କରିଥିବା ଅନେକ ଯୋଗୀ ମୁନିଋଷିମାନଙ୍କ ବିଷୟରେ ପୁରାଣରେ କେବଳ ପ୍ରମାଣ ମିଳେ । ଏଗୁଡ଼ିକ କାଳ୍ପନିକ ମନେହୁଏ । ମନେ ହେବା ମଧ୍ୟ ସ୍ୱାଭାବିକ । କିନ୍ତୁ ରାମକୃଷ୍ଣ ପରମହଂସ ଓ ଅରବିନ୍ଦ ଆଦି ସିଦ୍ଧପୁରୁଷମାନଙ୍କର ସାଧନା ଓ ତତ୍‌ଲବ୍ଧ ସିଦ୍ଧିକୁ କେବେ ଅସ୍ୱୀକାର କରିହେବ ନାହିଁ ।

ଠିକ୍ ସେହିପରି ଆଚାର୍ଯ୍ୟ ଥିଲେ ଜଣେ ସିଦ୍ଧପୁରୁଷ । ନିରବଚ୍ଛିନ୍ନ ସାନ୍ନିଧ ସୁଯୋଗ ଲାଭ କରିଥିବା ସୁଯୋଗ୍ୟ ଶିଷ୍ୟ ସଚ୍ଚିଦାନନ୍ଦଙ୍କର ଏହା ଏକାନ୍ତ ଅନୁଭୂତ ଘଟନା । ଆଚାର୍ଯ୍ୟ ମହାଶୟ ସମସ୍ତଙ୍କର ଅଲକ୍ଷ୍ୟରେ ମାଳା ଜପ କରନ୍ତି । ଜନସମାଜର ନିଦ୍ରାର ସାନ୍ଦ୍ରତା ଯେତେବେଳେ ଚରମ ସୀମା ସ୍ପର୍ଶ କରୁଥାଏ ସେହି ସମୟରେ ନିଦ୍ରାଭଙ୍ଗ ହୁଏ ଆଚାର୍ଯ୍ୟଙ୍କର । ଅବଶ୍ୟ ଏହି ଅଭ୍ୟାସଟି ତ୍ୱରାନ୍ୱିତ ହୋଇଥିଲା ପଣ୍ଡିତ ଗୋପବନ୍ଧୁଙ୍କର ସାନ୍ନିଧରେ । ତାଙ୍କର ସାଧନା ବିଷୟରେ ରମାଦେବୀ ମଧ୍ୟ ଅବଗତ ଥିଲେ । ସେ ଲେଖିଛନ୍ତି— ନଈକୂଳ ସନ୍‌ସାଇନ୍ ପଡ଼ିଆ ପାଖ ଘରେ ସବୁ କଂଗ୍ରେସ ଲୋକେ ଆଡ୍‌ଡ଼ା କରୁଥିଲେ । ଲବଣ ଆନ୍ଦୋଳନ (୧୯୩୦)ରେ ପ୍ରଥମେ ଆଚାର୍ଯ୍ୟଙ୍କ ସହିତ ମୋର ସାକ୍ଷାତ । ଆମ ଘରୁ ଲବଣ ଆନ୍ଦୋଳନର ସୂତ୍ରପାତ ହେଲା ଓ ଆଚାର୍ଯ୍ୟଙ୍କ ସହ ଆମେ କେତେଜଣ ଇଂଚୁଡ଼ିକୁ ଲବଣ ସତ୍ୟାଗ୍ରହ କାର୍ଯ୍ୟରେ ଗଲୁ । ଗୋପବନ୍ଧୁ ଚୌଧୁରୀ କଟକରୁ ଧରାହୋଇ ଜେଲ ଗଲେ । ଅନ୍ୟମାନଙ୍କ ମଧ୍ୟରେ ବିଶ୍ୱନାଥ ହୋତା, ମୁରାରି ତ୍ରିପାଠୀ ମଧ୍ୟ ଆନ୍ଦୋଳନରେ ଯୋଗ ଦେଇଥିଲେ । ତା'ପରେ କୁଜଙ୍ଗଠାରେ ମୋତେ ଲୁଣମରା କାମରେ ନିଯୁକ୍ତ କରାଗଲା ଓ ପରେ ପରେ ମୋତେ କଟକରେ ଗିରଫ କରାଗଲା ।

ନାରୀମାନଙ୍କ ମଧ୍ୟରେ ମାଳତୀ ଦେବୀ, ସୁଭଦ୍ରା ମହତାବ, ବରିର ପ୍ରିୟମ୍ବଦା ଦେବୀ, ଛତ୍ରପୁରର ଲକ୍ଷ୍ମୀବାଈ ଓ ସରଳାଦେବୀ ଆଦି ଏହି ଲବଣ ଆନ୍ଦୋଳନରେ ଯୋଗ ଦେଇଥିଲେ । ଆମ ସମସ୍ତଙ୍କ ଆଦର୍ଶ ଥିଲେ ଆଚାର୍ଯ୍ୟ ମହାଶୟ । ବେଳେ ବେଳେ ବହୁତ ଥଟ୍ଟା କଥା କହି, ନାନାଦି ଗପ କରି ଆମକୁ କର୍ତ୍ତବ୍ୟରେ ଅନୁବ୍ରତୀ କରୁଥିଲେ । ଆମର ସମସ୍ତ କ୍ଲାନ୍ତି ତାଙ୍କ ସାହଚର୍ଯ୍ୟରେ ଦୂର ହୋଇଯାଇ ମନରେ ଗଭୀର ପ୍ରତ୍ୟୟ ସୃଷ୍ଟି ହେଉଥିଲା । ପ୍ରାଚୀନ କାଳର ମୁନିଋଷିମାନଙ୍କ ପରି ଆଚାର୍ଯ୍ୟ ସଦାବେଳେ ଉପଦେଶ ଦେଉଥିଲେ, ''ଭଲ ମଣିଷ ହୁଅ । ଭଲ ମଣିଷ ହେବା ପାଇଁ ଭଲ ଘର, ଭଲ ଗାଡ଼ି, ଭଲ ପୋଷାକ, ଭଲ ପାଟି ସୁଆଦିଆ ଖାଦ୍ୟ ଲୋଡ଼ା ହୁଏ ନାହିଁ । ବରଂ ବିଳାସ-ବିଭବ ମଣିଷକୁ ଅମଣିଷ କରେ । ସବୁ କ୍ଷେତ୍ରରେ ଭଲ ମଣିଷ ଆବଶ୍ୟକ । ତମେ ଇଞ୍ଜିନିୟର ହୁଅ, ଡାକ୍ତର ହୁଅ, ଓକିଲ ହୁଅ ସବୁ କ୍ଷେତ୍ରରେ ଭଲ

ମଣିଷ ଆବଶ୍ୟକ ।'' ଏହାହିଁ ଥିଲା ଆଚାର୍ଯ୍ୟ ମହାଶୟଙ୍କର ସମସ୍ତଙ୍କୁ ଉପଦେଶ । କିନ୍ତୁ ଏକଥା ଅନେକ ଶୁଣି ଗଲେଣି । ଆଚାର୍ଯ୍ୟ ମହାଶୟ ସାଧନାର ଯେଉଁ ଚରମ ସୀମାରେ ପହଞ୍ଚିଥିଲେ ତାହା ଜୀବଦ୍ଦଶାରେ ବା ବଞ୍ଚିଥିଲା ବେଳେ ଅଧିକାଂଶ ଜାଣିପାରିନଥିଲେ ।

ତାଙ୍କ ଜପରେ ସୃଷ୍ଟି ହେଉଥିଲା ମହାଜାଗତିକ ଚୁମ୍ବକୀୟ କଂପନ । ତାଙ୍କର ପରମ ସେବକ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତିଙ୍କର ଏ ସଂବନ୍ଧୀୟ ଏକ ଅଭିଜ୍ଞତା ଏଠାରେ ଉଦ୍ଧାର କରାଗଲା –

ସବୁଦିନ ପରି ସକାଳେ ଆଚାର୍ଯ୍ୟ ମହାଶୟ ସମୁଦ୍ର କୂଳକୁ ବୁଲିଆସି ଡାକ୍ତର ମହାଦେବବାବୁଙ୍କ ଘରେ ପହଞ୍ଚିଲେ । ମହାଦେବବାବୁ ବାଷ୍ପରୁଦ୍ଧ କଣ୍ଠରେ ତାଙ୍କର ଗୋଟିଏ ନାତୁଣୀ ଗତକାଲିଠାରୁ ପଡ଼ିଯାଇ ବେହୋସ ଅବସ୍ଥାରେ ପୁରୀ ଡାକ୍ତରଖାନାରେ ଥିବା କଥା ଆଚାର୍ଯ୍ୟ ମହାଶୟଙ୍କୁ ବତାଇଲେ । ଆଚାର୍ଯ୍ୟ ମହାଶୟ ସାଙ୍ଗେ ସାଙ୍ଗେ ପୁରୀ ଡାକ୍ତରଖାନାର ଉପର ମହଲାକୁ ଗଲେ ଓ ସେ ରୋଗୀର ବିଛଣା ପାଖରେ ବସିପଡ଼ି ତାଙ୍କୁ ଆଉଁଶିବାକୁ ଲାଗିଲେ, କିନ୍ତୁ ମୁଁ ଲକ୍ଷ୍ୟ କରୁଥାଏ ଆଚାର୍ଯ୍ୟ ମହାଶୟଙ୍କ ହାତ ରୋଗୀର ଦେହ ଉପରେ ସୂତାଏ ଛାଡ଼ି ଯାଆ-ଆସ କରୁଥାଏ । ରୋଗୀ ଶରୀରକୁ  ସ୍ପର୍ଶ କରୁନଥାଏ ।

ସେଠାରୁ ଫେରି ଗୋପବନ୍ଧୁ ଭବନରେ ପହଞ୍ଚି ଆଚାର୍ଯ୍ୟ ମହାଶୟ ବିଛଣାରେ ବସି ତାଙ୍କର ଜପାମାଳାଟି ମାଗିଲେ । ମୁଁ ପଚାରିଲି–'' ବର୍ତ୍ତମାନ ଦିନ ଦଶଟା ହେଲାଣି, ମାଳା କ'ଣ ହେବ ?'' ଟିକିଏ ବିରକ୍ତି ପ୍ରକାଶ କରି କହିଲେ–''ସବୁକଥା ନ ଜାଣିଲେ କ'ଣ ହେବନାହିଁ ? କାହାରିକୁ କିଛି କହିବା ଦରକାର ନାହିଁ । ମାଳା ଡବାଟି ଦିଅ ।'' ମୁଁ ମାଳା ଡବାଟି ତାଙ୍କ ହାତକୁ ବଢ଼ାଇଦେଲି । ସେ ଜପରେ ଲାଗିଗଲେ । ୧୨ଟା ପରେ ଜପ ଶେଷ କରି ଖାଇଲେ, ଅଳ୍ପ ସମୟ ବିଶ୍ରାମ ନେଇ ପୁଣି ଜପ ଆରମ୍ଭ କଲେ ।

ଏହିପରି ତହିଁ ଆରଦିନ ଅବେଳରେ ଜପ ପରେ ଖାଇବାର ବିଳମ୍ବ ହେବାରୁ ମତେ କହିଲେ, ମୋର କ'ଣ ଖାଇବା ଡେରି ହୋଇଗଲା କି ? ମୁଁ କହିଲି, ମାନବ ସେବା ଯାହାର ବ୍ରତ ତାହାର ସ୍ୱସେବାର ସହଳ ବିଳମ୍ବର ପ୍ରଶ୍ନ କାହିଁ ? ମୋ କାନ୍ଧରେ

ହାତ ମାରିଦେଇ କହିଲେ, ଠିକ୍ ବୁଝିଛ । ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି, ''ଆପଣଙ୍କୁ ଠିକ୍ ଠିକ୍ ଭାବରେ ବୁଝିବା ଅସମ୍ଭବ ।'' ସେ ଖାଇଲେ, ବିଶ୍ରାମ ନେଲେ । ସେଦିନ ମଧ୍ୟ ସେ ରୋଗୀକୁ ଦେଖିବାକୁ ଡାକ୍ତରଖାନା ଗଲେ । ରୋଗୀ ମା'ଠାରୁ ଶୁଣିଲେ ତାର ଚେତା ଫେରିଆସିଛି । ତହିଁ ଆରଦିନ ସମୁଦ୍ରକୂଳରେ ବୁଲିଲା ବେଳେ କହି ପକାଇଲେ– ''କିଏ କହୁଛି ମନ୍ତ୍ର ଏ ଯୁଗରେ କାମ କରେ ନାହିଁ ବୋଲି, ସେ ରୋଗୀର ଚେତା ଫେରିବ କି ନାହିଁ ଡାକ୍ତରମାନେ ସନ୍ଦିହାନ ଥିଲେ । ତାହାପାଇଁ ମୁଁ ପ୍ରାର୍ଥନା କଲି, ସେ ଭଲ ହୋଇଗଲା । ତମେ ଜାଣ ତାର ବାପା ମୋର ଅତି ପ୍ରିୟଛାତ୍ର ଥିଲା । ମୁଁ ତାର ଅଜା ଓ ବୋଉର ଦୁଃଖ ଦେଖି ସମ୍ଭାଳି ପାରିଲି ନାହିଁ । ତାହାପାଇଁ ଏ ପ୍ରକ୍ରିୟା (ଜପ) ଫଳପ୍ରଦ ହେଲା ।'' ମୁଁ ସଙ୍ଗେ ସଙ୍ଗେ କହିପକାଇଲି– ଆଜ୍ଞା ଆପଣଙ୍କର ଅନେକ ଆଶ୍ରିତ ଲୋକ ଅଛନ୍ତି । ମୁଁ ସେମାନଙ୍କୁ ଏକଥା ଜଣାଇଦିଏ । ତାହାହେଲେ କାହାର ବିପଦ ଆପଦ ପଡ଼ିଲେ ସେ ଆପଣଙ୍କର ଶରଣାଗତ ହେବ । ଏକଥା ଶୁଣିବା ମାତ୍ରକେ ସେ ଗଦ୍‌ଗଦ କଣ୍ଠରେ ଛଳଛଳ ଆଖିରେ କହିପକାଇଲେ, ''ସଚ୍ଚିବାବୁ ରକ୍ଷା କର । ଏକଥା ପ୍ରଘଟ ହେଲେ ମୋ ପାଖରେ ରକ୍ତଲେଇ ହୋଇଯିବ । ମନେରଖ, ମୋ ବଞ୍ଚିବା ଭିତରେ , ଏକଥା କାହାରିକୁ କହିବ ନାହିଁ ।'' ମୁଁ ସେଦିନ ତାଙ୍କୁ ସମୁଦ୍ର କୂଳରେ ସେ ଅବସ୍ଥାରେ ଦେଖି ଓ ତାଙ୍କ କଥା ଶୁଣି ଅଭିଭୂତ ହୋଇଗଲି । ମନେପଡ଼ିଲା, ପରମହଂସ ରାମକୃଷ୍ଣ କହିଥିଲେ, ''ପ୍ରତିଷ୍ଠା ଶୁକରୀ ବିଷ୍ଠା ।'' ମୁଁ କହିଲି, ''ସତେ ଆପଣ କେତେ ବଡ଼ ସିଦ୍ଧପୁରୁଷ, ଅଥଚ ନିଜକୁ ଲୁଚାଇ ଚାଲିଯିବେ । ମୁଁ ଜବାବ ଦେଉଛି ଏକଥା ଆପଣ ବଂଚିଥିବା ଭିତରେ କାହାକୁ କହିବି ନାହିଁ ।'' ଶେଷ ସୁଦ୍ଧା ସଚ୍ଚିଦାନନ୍ଦ ମହାନ୍ତି ଆଚାର୍ଯ୍ୟ ହରିହରଙ୍କର ମହିମା ପ୍ରଚାର ନିମିତ୍ତ ଉଦ୍ୟମ କରିନଥିଲେ । ପ୍ରକୃତ ସିଦ୍ଧଯୋଗୀ ବା ସିଦ୍ଧପୁରୁଷଗଣ ଆତ୍ମଚିନ୍ତନ ଓ ଆତ୍ମଶୁଦ୍ଧିରେ ଅଧିକ ସମୟ ବିନିଯୋଗ କରି ପ୍ରଚାର ପାଇଁ ଭୀଷଣ ବିମୁଖତା ପ୍ରକାଶ କରିଥାନ୍ତି । ତେଣୁ ଶ୍ରୀକୃଷ୍ଣଙ୍କର ବିଶ୍ୱରୂପ ଅର୍ଜୁନ ଦର୍ଶନ କରିବା ପରି ସଚ୍ଚିଦାନନ୍ଦ ମହାନ୍ତି ଏହି ତେଜସ୍ୱୀ ମହାପୁରୁଷଙ୍କର ତେଜପୁଞ୍ଜର ନୀରବ ବିକିରଣକୁ ଉପଲବ୍ଧି କରି ନତମସ୍ତକ ଓ ଅନୁରକ୍ତ ହୋଇଥିଲେ ।

ନାମକୁ ମାତ୍ର ହଟଚମଟ ବିଦ୍ୟାସାଧନ କରି ଦ୍ୱାର ଆଗରେ ସାଇନବୋର୍ଡ଼ ଟଙ୍ଗାଇ ସେଥିରେ ମିଥ୍ୟା ବିଶେଷଣର ପ୍ରୟୋଗ କରିବା ପାଇଁ ଆଜିକାଲି ନକଲି

ସିଦ୍ଧପୁରୁଷଗଣ କୁଣ୍ଠାବୋଧ କରୁନାହାନ୍ତି । କିନ୍ତୁ ଆଚାର୍ଯ୍ୟ ଥିଲେ ତାର ବ୍ୟତିକ୍ରମ । ଆତ୍ମପ୍ରଚାର ପାଇଁ ସେ ଉଦ୍‌ଗ୍ରୀବ ନଥିଲେ । ଆତ୍ମାନୁସନ୍ଧାନୀ ହରିହର । ତାଙ୍କ ନାମ ପୂର୍ବରୁ ଯୁକ୍ତ ହେଉଥିବା ଆଚାର୍ଯ୍ୟ ଏକ ଶ୍ରଦ୍ଧାପୂର୍ଣ୍ଣ ଉପହାର ଥିଲା ଉତ୍କଳର କୃତଜ୍ଞ ଶିଷ୍ୟବର୍ଗଙ୍କର । ଜନତାର ତାଙ୍କ ପ୍ରତି ଥିଲା ଅସୀମ ଶ୍ରଦ୍ଧା । ଦର୍ଶନ ମାତ୍ରକେ ଆବାଳ-ବୃଦ୍ଧବନିତା ସମ୍ମୋହିତ ହେଉଥିଲେ ତାଙ୍କର ସିଦ୍ଧି ନିକଟରେ ।

୧୯୬୪ ମସିହାରେ ଛାତ୍ର ଧର୍ମଘଟ କ୍ରମଶଃ ପ୍ରବଳତର ହେଉଥାଏ । ଆଚାର୍ଯ୍ୟ ମହାଶୟ ସେତେବେଳେ ପୁରୀରେ ବିଶ୍ରାମ କରୁଥାଆନ୍ତି । ପୁଲିସ୍‌ଙ୍କ ଗୁଳିମାଡ଼ରେ କେତେଜଣ ଛାତ୍ର ପ୍ରାଣ ହରାଇବା ପରେ ଆନ୍ଦୋଳନ ଆହୁରି ତେଜି ଉଠିଲା । ମହାଶୟେ ଆଉ ଦମ୍ଭ ଧରି ରହିପାରିଲେ ନାହିଁ । ଧୃତରାଷ୍ଟ୍ରଙ୍କ ପରି ଅନ୍ଧ ହୋଇ ବସି ନାତିନାତୁଣୀଙ୍କ ଦୁଃଖର କାହାଣୀ ଶୁଣିବାକୁ ସେ ପ୍ରସ୍ତୁତ ନଥିଲେ । ସେ କହିଥିଲେ, ''କାହାର ଦୋଷ ସେ ବିଚାର ମୋ ପାଖରେ ନାହିଁ । ଯେଉଁମାନେ ଆଜି ଶାସନ ଗାଦିରେ ସେମାନଙ୍କୁ ମଧ୍ୟ ମୁଁ ଗଭୀର ଶ୍ରଦ୍ଧା କରେ । ତଥାପି ମୁଁ ଯାଇ ଭୁବନେଶ୍ୱରରେ ଆମରଣ ଅନଶନ କରିବି । ଏ ନିଆଁ ଯଦି ଲିଭିନଯାଏ, ମୁଁ ବଂଚି ରହିବାର କୌଣସି ଆବଶ୍ୟକତା ନାହିଁ ।'' ହରିହରଙ୍କର ଅନଶନ ପ୍ରସ୍ତାବ ଛାତ୍ରମାନଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା ଓ ଆନ୍ଦୋଳନର ନିଆଁ କ୍ରମଶଃ ଶିଖାବିହୀନ ହୋଇପଡ଼ିଥିଲା । ସରକାର ଓ ଛାତ୍ର ମଧ୍ୟରେ ଶାନ୍ତିପୂର୍ଣ୍ଣ ଆଲୋଚନା ସମ୍ଭବ ହୋଇଥିଲା ।

ଅକ୍ଳାନ୍ତ ପରିଶ୍ରମ, ବିଶ୍ରାମବିହୀନ ଜୀବନଯାପନ ତଥା ଖାଦ୍ୟପେୟରେ ମାତ୍ରାଧିକ ସାରଲ୍ୟ ତାଙ୍କ ମାନସିକ ଶକ୍ତିର ଅପଚୟ କରିପାରି ନଥିଲା ସତ ହେଲେ ପଞ୍ଚମହାଭୂତର ଶରୀର ଧୀରେ ଧୀରେ ଶକ୍ତିବିହୀନ ହୋଇପଡୁଥିଲା । ୧୯୪୫ ମସିହା ବେଳକୁ ତାଙ୍କର ଦୃଷ୍ଟିଶକ୍ତି କ୍ଷୀଣ ହୋଇ ଆସୁଥାଏ । ଦଶ ବର୍ଷ ଭିତରେ ଦର୍ଶନେନ୍ଦ୍ରିୟର ଅନୁଭୂତି ସେ ଧୀରେ ଧୀରେ ହରାଇ ସାରିଥିଲେ । କିନ୍ତୁ ଦର୍ଶନେନ୍ଦ୍ରିୟର ଅସହଯୋଗକୁ ସେ ଭ୍ରୂକ୍ଷେପ ନକରି ସର୍ବୋଦୟ ସମ୍ମିଳନୀର ଆୟୋଜନ, ପଦଯାତ୍ରା ଓ ଦେଶସେବାକୁ ଅବ୍ୟାହତ ରଖିବା ପାଇଁ ଉଦ୍ୟମ କରି ଚାଲିଥାନ୍ତି । ୧୯୬୦ ମସିହା ଏପ୍ରିଲ୍ ୫ ତାରିଖରେ ଆଚାର୍ଯ୍ୟ ମହାଶୟଙ୍କର ଚକ୍ଷୁରେ ଅସ୍ତ୍ରୋପଚାର ହୋଇଥିଲା । ନିଜର ମୃତ୍ୟୁପରେ ଚକ୍ଷୁ କୌଣସି ଚକ୍ଷୁହୀନ ବ୍ୟକ୍ତିକୁ ପ୍ରଦାନ କରିବା ପାଇଁ ସେ ଇଚ୍ଛା

ପ୍ରକଟ କରିଥିଲେ । ଆଉ ଗୋଟିଏ ଘଟଣା ଏହି ସମୟର—ଆଚାର୍ଯ୍ୟେ କଟକର ଭୂଦାନ ଭବନରେ ରହୁଥାନ୍ତି । ଦର୍ଶନେନ୍ଦ୍ରିୟ ଦ୍ୱୟର ଅସହଯୋଗ ଯୋଗୁଁ ସେ ହଠାତ୍ ବାରଣ୍ଡାରୁ ତଳକୁ ଗଳି ପଡ଼ିଲେ । କ୍ଷତବିକ୍ଷତ ଶରୀରର ଯନ୍ତ୍ରଣା ସତ୍ତ୍ୱେ ତାଙ୍କର ମୁହଁରୁ ଉଛୁଳି ଆସୁଥିଲା ହସର ଫଲ୍‌ଗୁ । ତାଙ୍କୁ ଏପରି ଅବସ୍ଥାରେ ଦେଖି ଡାକ୍ତର କହିଲେ ଆପଣଙ୍କ ପାଖରେ ଅନୁରକ୍ତ ସେବକ ଅଛନ୍ତି, ଆପଣ ସେମାନଙ୍କୁ ନଉଠାଇ କିମ୍ବା ସେମାନଙ୍କ ଭିତରୁ ଜଣକୁ ସଙ୍ଗରେ ନ ନେଇ ଏକୁଟିଆ କାହିଁକି ଗଲେ ? ଆଚାର୍ଯ୍ୟେ ହସି ହସି ଡାକ୍ତରଙ୍କୁ ଉତ୍ତର ଦେଲେ, ‘‘କିହୋ, ଆଖିଥିବା ଲୋକେ ତ ଏତେ ଦୁର୍ଘଟଣା ଘଟାଉଛନ୍ତି ଯେ ରାଇଜଯାକର ଆଇନ ଓ ଶାସନ ତାଙ୍କୁ ଅକୁଲାନ ହେଉଛି । ଆମ ପରି ଅନ୍ଧ ଲୋକର ଏତିକି ସାମାନ୍ୟ ଦୁର୍ଘଟଣାରେ ତୁମେ ଏତେ ବ୍ୟସ୍ତ କାହିଁକି ?’’ ଡାକ୍ତର ଏହା ଶୁଣି ମନେ ମନେ ଲଜ୍ଜିତ ହେଲେ ।

ଗୋପବନ୍ଧୁ ଥିଲେ ଆଚାର୍ଯ୍ୟଙ୍କର ଗୁରୁଦେବ ଓ ଗାନ୍ଧୀ ଥିଲେ ଦାର୍ଶନିକ । ଗୋପବନ୍ଧୁଙ୍କ ଢାଞ୍ଚାରେ ସେ ଜଣେ ଗାନ୍ଧୀ ଅନୁଗାମୀ ବ୍ୟକ୍ତି ହିସାବରେ ନିଜକୁ ପ୍ରତିଷ୍ଠିତ କରିବା ପାଇଁ ଉଦ୍ୟମ କରି ଚାଲିଥିଲେ । ଗାନ୍ଧୀ ଆତତାୟୀର ଗୁଳିମାଡ଼ରେ ଅସ୍ପୃଶ୍ୟତା ବିରୁଦ୍ଧରେ ଜନମତ ଜାଗ୍ରତ କରିବାକୁ ଉଦ୍ୟମ କରୁ କରୁ ଟଳି ପଡ଼ିଲେ ସତ କିନ୍ତୁ ଆଚାର୍ଯ୍ୟଙ୍କ ଉପରକୁ କେହି ଟେକାଟାଏ ପକାଇବା ପାଇଁ ସାହସ କରିପାରିନାହାନ୍ତି । ସେ ଥିଲେ ଅଜାତଶତ୍ରୁ, ସର୍ବଜନମିତ୍ର ଶିକ୍ଷକ, ବନ୍ଧୁ, ଉପଦେଷ୍ଟା ଓ ମାର୍ଗ ପ୍ରଦର୍ଶକ । ଏବେ ବି ମନେହୁଏ ତାର ଆତ୍ମା ମୋକ୍ଷ ନିମନ୍ତେ ଯୋଗ୍ୟ ବିବେଚିତ ହୋଇଥିଲେ ମଧ୍ୟ ସେ ଯେପରି ଅମୋକ୍ଷର ବର ମାଗି ବିଧାତା ସୃଷ୍ଟିର ବୈକଲ୍ୟ ସୁଧାର ପାଇଁ ଘୂରିବୁଲୁଛନ୍ତି ଏଦିଗରୁ ସେଦିଗ । ତାଙ୍କର ସ୍ନେହାଶୀର୍ବାଦର ଅବାରିତ ଧାରା ଝରିପଡୁଛି ନୂତନ ଯୁଗର ନବୀନ ଦାୟାଦମାନଙ୍କ ଉପରେ, ପୁରୀର ‘ପୁରୀ ସେବା ସମିତି’ ଉପରେ, ସ୍ୱେଚ୍ଛାସେବକ ଓ ନବସଂସ୍କାରକମାନଙ୍କ ଉପରେ ।